ଶ୍ରୀ ଶ୍ରୀ ଗୌରାଙ୍ଗ ବିଧୂର୍ଜୟତି

# ଶତକ ତ୍ରୟମ୍

ସଂପାଦକ :

ଦାସାନୁଦାସ ଅଦ୍ୱୈତ ଚରଣ ଦାସ

ସଙ୍ଗଣକସଂସ୍କରଣଂ ଦାସାଭାସେନ ହରିପାର୍ଷଦଦାସେନ କୃତମ୍

ଶ୍ରୀ ଶ୍ରୀ ଗୌରାଙ୍ଗ ବିଧୂର୍ଜୟତି

# ଶତକ ତ୍ରୟମ୍



ସଂପାଦକ :

ଦାସାନୁଦାସ ଅଦ୍ୱୈତ ଚରଣ ଦାସ
ନୂତନ ରାଧାକାନ୍ତ ମନ୍ଦିର, ଗୋପୀନାଥ ବାଗ, ବୃନ୍ଦାବନ

# ଶତକ ତ୍ରୟମ୍


ପ୍ରକାଶକ : ଦାସାଭାସ ଅଦ୍ୱୈତ ଚରଣ ଦାସ
ବେଦାନ୍ତାଚାର୍ଯ୍ୟ,
ନୂତନ ରାଧାକାନ୍ତ ମନ୍ଦିର, ଗୋପିନାଥ ବାଗ,
ବୃନ୍ଦାବନ, ମଥୁରା

ପ୍ରକାଶନ ତିଥି : ଶ୍ରୀଗୁଣ୍ଡିଚା ୨୦୧୬

ପ୍ରକାଶନ ସଂଖ୍ୟା : ୨୦୦୦ ପ୍ରତି

ପ୍ରାପ୍ତି ସ୍ଥାନ : ୧) **ଶ୍ରୀମଦାନନ୍ଦ ଗୋପାଳ ବେଦାନ୍ତ ତୀର୍ଥ**
ଶ୍ରୀମଭାଗବତ ବିଦ୍ୟାଳୟ,
ରାଧାନଗର କଲୋନୀ,
ଶ୍ରୀଧାମ ରାଧାକୁଣ୍ଡ (ମଥୁରା)

୨) **ଶ୍ରୀ ମହନ୍ତ ମଦନ ଗୋପାଳ ଦାସ**
ଛୋଟ ଗୋପାଳଗୁର ମନ୍ଦିର
ଗୋପିନାଥ ବାଗ, ବୃନ୍ଦାବନ, ମଥୁରା

୩) **ଶ୍ରୀ ଶ୍ରୀନିବାସ ଦାସ ମହନ୍ତ ମହାରାଜ**
ଶ୍ରୀ ହରିଦାସ ଠାକୁରଙ୍କ ଭଜନ ସ୍ଥଳି
ଶ୍ରୀ ସିଦ୍ଧବକୁଳ ମଠ, ବାଲିସାହି, ପୁରୀ

ମୁଦ୍ରଣ : **ମହାଲକ୍ଷ୍ମୀ କମ୍ପ୍ୟୁଟର**
ହେରାଗୋହିରୀ ସାହି, ପୁରୀ

ମୂଲ୍ୟ : **୨୫/- ଟଙ୍କା ମାତ୍ର**

# ପ୍ରକାଶକଙ୍କ ନିବେଦନ

କାଳାନ୍ନଷ୍ଟଃ ଭକ୍ତିଯୋଗଂ ନିଜଂ ଯଃ
ପ୍ରାଦୁଷ୍କର୍ତ୍ତୁଂ କୃଷ୍ଣଚୈତନ୍ୟ ନାମା ।
ଆବିର୍ଭୂତସ୍ତସ୍ୟ ପାଦାରବିନ୍ଦେ
ଗାଢଂ ଗାଢଂ ଲୀୟତାଂ ଚିତ୍ତଭୃଙ୍ଗ ।।

କଳିଯୁଗ ପାବନ ସ୍ୱଭଜନ ବିଭଜନ ପ୍ରାୟୋଜନାବତାର ଶ୍ରୀ ଗୌରାଙ୍ଗ ମହାପ୍ରଭୁ ଶ୍ରୀଧାମ ନବଦ୍ୱୀପରେ ଅବତୀର୍ଣ୍ଣ ହୋଇ ରୁଚୀର ବାଲ୍ୟ, ପୌଗଣ୍ଡାଦି ଲୀଳା କରଣାନନ୍ତର ଗାର୍ହସ୍ଥ୍ୟ ପ୍ରବେଶପୂର୍ବକ, ଜୀବଜଗତକୁ ଭକ୍ତି ପ୍ରଦା ନାଦି କୀର୍ତ୍ତନ ବିଳାସ, ବିଦ୍ୟାବିଳାସ କରଣାନନ୍ତର ତୁରୀୟାଶ୍ରମ ସ୍ୱୀକାରପୂର୍ବକ ମାତୃଆଜ୍ଞାକୁ ମାଧ୍ୟମ କରି ନୀଳାଚଳ ଆଗମନ କରିଥିଲେ । ସେହି ସମୟରେ ଉତ୍କଳାଧିପତୀ ଶ୍ରୀ ପ୍ରତାପରୁଦ୍ରଙ୍କର ସଭା ପଣ୍ଡିତରୂପେ ସାର୍ବଭୌମଭଟ୍ଟାଚାର୍ଯ୍ୟ ବିରାଜମାନ ଥିଲେ । ଯାହାର ଜନ୍ମ ନବଦ୍ୱୀପର ବିଦ୍ୟାନଗରରେ । ଯେକି ଏଭଳି ଶ୍ରୁତିଧର ଥିଲେ, ଯେଉଁ ନ୍ୟାୟଶାସ୍ତ୍ର ମିଥିଳାର ନିଜସ୍ୱ ସମ୍ପତ୍ତି ହୋଇଥିଲା । ମିଥିଳାବାସୀ ତାହା ଲିଖିତ ଆକାରରେ ବାହାରକୁ ଛାଡୁନଥିଲେ । ସେହି ନ୍ୟାୟକୁ ସେ ଶ୍ରୁତିପଟଳରେ ଲେଖିନେଇ ଆସିପାରିଥିଲେ ଏବଂ ଆଜି ଆମ୍ଭମାନଙ୍କୁ ନବ୍ୟନ୍ୟାୟ ରୂପ ଧାରଣ କରି ଅନୁଗୃହିତ କରୁଅଛି । ଏହି ବିଦ୍ୱାନ ପ୍ରବର ତତ୍‌କାଳର ମାୟାବାଦ ପଣ୍ଡିତମାନଙ୍କର ଅଦ୍ୱିତୀୟ ପଣ୍ଡିତ । ଦେଶ ବିଦେଶରୁ ଅନେକ ବିଦ୍ୱାନ୍ ବେଦାନ୍ତ ଅଧ୍ୟୟନ ପାଇଁ ଏହାଙ୍କ ନିକଟକୁ ଆସନ୍ତି । ଜଗନ୍ନାଥ ବଡ଼ କରୁଣାମୟ, ସେ ଜୀବର ବହିର୍ମୁଖତା ସହିପାରନ୍ତି ନାହିଁ । ଏଣୁ ସେ କୃପାକରି ସର୍ବ ବେଦବେଦାନ୍ତ ଗୀତାଉପନିଷଦର ସ୍ରୋତସ୍ୱିନୀଟିକୁ ନିଜ ଚୈତନ୍ୟ ସାଗରରେ ସମାହିତ କରିବାପାଇଁ ନିଜ ଶ୍ରୀମନ୍ଦିରଟିକୁ ସଙ୍ଗମସ୍ଥଳ ନିରୂପଣ କରିଥିଲେ ।

ନଦୀ ଓ ସାଗରର ପ୍ରଥମ ମିଳନରେ ଉତ୍ତାଳ ତରଙ୍ଗ ସୃଷ୍ଟି ହୋଇଥାଏ । ଠିକ୍ ସେହିଭଳି ଏହି ଦୁହିଁଙ୍କର ମିଳନରେ ନବ ଦିନ ବ୍ୟାପି

ବେଦାନ୍ତ ଆଲୋଚନା ହୋଇଥିଲା । କିନ୍ତୁ ପରିଶେଷରେ ମହାପ୍ରଭୁଙ୍କର ବ୍ୟାଖ୍ୟା ଶ୍ରବଣ କରି ସାର୍ବଭୌମ ଚକିତ ହୋଇଯାଇଥିଲେ ଏବଂ ମହାସାଗରରେ ନଦୀ ପ୍ରାୟ ଆତ୍ମସମର୍ପଣ କରିଥିଲେ । ସେହି ନଦୀ ଓ ସମୁଦ୍ରର ମିଳନରୁ ଜାତ ଏହି ଗ୍ରନ୍ଥରତ୍ନ ''ଶ୍ରୀ ଚୈତନ୍ୟ ଶତକମ୍'' ବା ''ସାର୍ବଭୌମ ଶତକମ୍'' ।

ଏହା ସହିତ ମଦୀୟ ଶିକ୍ଷାତୀର୍ଥ ମହୋଦୟଙ୍କ ଦ୍ୱାରା ରଚିତ ନାମାଚାର୍ଯ୍ୟ ଶ୍ରୀ ଶ୍ରୀ ହରିଦାସ ଠାକୁରଙ୍କ ଶତକ ଏବଂ ଶ୍ରୀ ଶ୍ରୀ ଶ୍ୟାମନନ୍ଦ ପ୍ରଭୁଙ୍କ ଦ୍ୱାରା ସେବିତ ଶ୍ରୀ ଶ୍ୟାମସୁନ୍ଦର ଶତକ ଦୁଇଟି ମଧ ସଜ୍ଜନ ସୁଧବିଧାନ ନିମିତ୍ତ ପ୍ରକାଶ କରାଯାଇଛି । ଏହା ପାଠ କରି ଯଦି କୌଣସି ଗୌର ଭକ୍ତଙ୍କ ଆନନ୍ଦ ବିଧାନ ହୁଏ ତେବେ ଏଇ ଅଧମର ପରିଶ୍ରମ ସଫଳ ହେବ ବୋଲି ମନେକରୁଅଛି ।

ଅତି କାର୍ଯ୍ୟବ୍ୟସ୍ତତାର ସହିତ ପ୍ରକାଶନ କରାଯାଇଥିବାରୁ ଭାଷାଗତ ତ୍ରୁଟି ଥାଇପାରେ । ଏଣୁ ଶୁଦ୍ଧିବୃନ୍ଦ ସାରଗ୍ରାହୀ ହଂସବତ୍ ସଂଶୋଧନ କରି ସାରବସ୍ତୁହିଁ ଗ୍ରହଣ କରିବେ । କାରଣ ଏହି ଭକ୍ତ ହୃଦୟର ବସ୍ତୁକୁ ମୁଁ ଧୃଷ୍ଟତାବଶତଃ ଦୁଃସାହସ କରିଅଛି । ଏଣୁ ମୋର ଧୃଷ୍ଟତାକୁ କ୍ଷମାକରି ଆଗକୁ ଏହି ପ୍ରକାର ବୈଷ୍ଣବ ସେବା କରିବା ପାଇଁ ଶକ୍ତି ସଂଚାର କରିବେ ବୋଲି ପ୍ରାର୍ଥନା ।

ଏକାମ୍ର କାନନବାସୀ ଶ୍ରୀ ଶେଷଦେବ ସ୍ୱାଇଁ ଆର୍ଥିକ ସହଯୋଗ କରିଥିବା ହେତୁ ଗୌର ଜଗନ୍ନାଥଙ୍କ ଚରଣରେ ତାଙ୍କର ସପରିବାରଙ୍କର ସର୍ବାଙ୍ଗୀନ ମଙ୍ଗଳ ଓ ଅଚଳା ଭକ୍ତି କାମନା କରୁଅଛି । ଭଗବତ୍ ଏବଂ ଭାଗବତ ସେବାରେ ଉପାର୍ଜିତ ସମ୍ବଳ ବ୍ୟୟ ହେଉ ବୋଲି ସ୍ୱେତର ସର୍ବନିୟନ୍ତାଙ୍କ ଚରଣରେ ପ୍ରାର୍ଥନା ।

ଅକ୍ଷର ସଜ୍ଜିକରଣ ଏବଂ ଗ୍ରନ୍ଥ ପ୍ରକାଶନରେ ସଂପୂର୍ଣ୍ଣ ସହଯୋଗୀ ମହାଲକ୍ଷ୍ମୀ କମ୍ପ୍ୟୁଟରର ସମସ୍ତ କାର୍ଯ୍ୟକର୍ତ୍ତାବୃନ୍ଦଙ୍କୁ କୃତଜ୍ଞତା ଜ୍ଞାପନ କରୁଅଛି ଏବଂ ସ୍ୱମହିମ୍ନ୍ୟାଧିଷ୍ଠିତ ବ୍ରହ୍ମାଣ୍ଡଗଣଙ୍କର ନାୟକଙ୍କ ଚରଣରେ ସେମାନଙ୍କ ସର୍ବପ୍ରକାରର ଉନ୍ନତି କାମନା କରେ ।

**ଦୀନ ପ୍ରକାଶକ**

**ଦାସଭାସ ଅଦ୍ୱୈତ ଚରଣ ଦାସ**

ଶ୍ରୀ ଶ୍ରୀଳବାସୁଦେବ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ବିରଚିତ

# ଶ୍ରୀ ଶ୍ରୀ ଚୈତନ୍ୟ ଶତକମ୍

ଶ୍ରୀ ଶ୍ରୀମନ୍ ମହାପ୍ରଭୁଙ୍କର ଶ୍ରୀମୁଖୋକ୍ତି -

**ଶତଶ୍ଳୋକ କରି ତୁମି ଯେକୈଲେ ସ୍ତବନ ।**
**ଯେ ଜନ କରିବେ ଇହା ଶ୍ରବଣ ପଠନ ।।**
**ଆମାତେ ତାହାର ଭକ୍ତି ହଇବେ ନିଶ୍ଚୟ ।**
**ସାର୍ବଭୌମ-ଶତକ ଯେ ହେନ କିର୍ତ୍ତି ରୟ ।।**

*- ଶ୍ରୀଚୈତନ୍ୟ ଭାଗବତ*

ହେ ସାର୍ବଭୌମ ! ତୁମେ ଯେଉଁ ଶତଶ୍ଳୋକରେ ମୋର ସ୍ତବ କରିଲ, ଏହା ଯିଏ ଶୁଣିବ ବା ପାଠ କରିବ ତାହାର ମୋ ନିକଟରେ ଅଚଳା ଭକ୍ତି ହେବ । ଏହିଭଳି ଏହାର ସାର୍ବଭୌମ ଶତକ ନାମେ କିର୍ତ୍ତି ରହିବ ।।

**ପ୍ରଣମ୍ୟ ତ୍ୱାଂ ପ୍ରଭୋ ଗୌର ତବପାଦେ ଶତଂ ବ୍ରୁବେ ।**
**ସଦା ଶୟାନାଂ ସାଧୂନାଂ ସୁଖାର୍ଥ ମେ କୃପାଂ କୁରୁ ।୧।**

ହେ ପ୍ରଭୋ ଗୌରେ ! ସଦାଶୟ ସଜ୍ଜନମାନଙ୍କର ସୁଖବିଧାନ ପାଇଁ ଆପଣଙ୍କର ଚରଣ ବନ୍ଦନ ରୂପକ ଶତଶ୍ଳୋକ ଆପଣଙ୍କର ଚରଣରେ ସମର୍ପଣ କରୁଛି । ଆପଣ ମୋତେ କୃପା କରନ୍ତୁ ।

**ଶ୍ରୀରାଧାକୃଷ୍ଣୟୋଃ ସେବାଂ ସ୍ଥାପୟିତ୍ୱା ଗୃହେ ଗୃହେ ।**
**ଶ୍ରୀମତ୍‌ସଂକୀର୍ତ୍ତନେ ଗୌରୋ ନୃତ୍ୟତି ପ୍ରେମ ବିହ୍ୱଳଃ ।୨।**

ଘରେ ଘରେ ଶ୍ରୀରାଧାକୃଷ୍ଣଯୁଗଳ ସେବାସ୍ଥାପନ କରି ଶ୍ରୀ ଗୌରସୁନ୍ଦର ପ୍ରେମାନନ୍ଦରେ ବିହ୍ୱଳ ହୋଇ ସଂକୀର୍ତ୍ତନରେ ଅଦ୍ଭୁତ ନୃତ୍ୟ କରୁଛନ୍ତି ।

**ଜିହ୍ୱାୟାଂ ହରିନାମ ମୋହ ଧାରା ଶତଂ ନେତ୍ରୟୋଃ**
**ସର୍ବାଙ୍ଗେ ପୁଲକୋଦ୍‌ଗମୋ ନିରବଧି ସ୍ୱେଦଶ୍ଚ ବିଭ୍ରାଜତେ ।**
**ଶ୍ରୀମଦ୍‌ଗୌର ହରେ ପ୍ରଗଲ୍‌ଭ ମଧୁରା ଭକ୍ତି ପ୍ରଦାତୁର୍ଜ୍ଜନୈଃ**
**ସେବା ଶ୍ରୀ ବ୍ରଜ୍‌ଯୋଷିତାମନୁଗତା ନିତ୍ୟାସଦା ଶିକ୍ଷତେ ।୩।**

ଜୀବଗଣଙ୍କୁ ସୁମଧୁର ହରି ଭକ୍ତି ପ୍ରଦାନ ଲାଗି ଶ୍ରୀମଦ୍‌ଗୌରହରି ନିଜ ଜିହ୍ୱାରେ ହରିନାମ କୀର୍ତ୍ତନ କରୁଛନ୍ତି - ପ୍ରେମାନନ୍ଦରେ ତାଙ୍କର ନେତ୍ରଦ୍ୱୟରୁ ଶତଧାରା ପ୍ରବାହିତ ହେଉଛି । ତାଙ୍କର ସର୍ବାଙ୍ଗ ପୁଲକପୂର୍ଣ୍ଣ ଏବଂ ସ୍ୱେଦଜଳଶିକ୍ତ । ବ୍ରଜଗୋପିକାବୃନ୍ଦଙ୍କର ଅନୁଗାମୀ ହୋଇ ଶ୍ରୀ ଶ୍ରୀ ବ୍ରଜଯୁଗଳ ସେବା କଳିହତ ଜୀବମାନଙ୍କୁ ଅନୁକ୍ଷଣ ଶିକ୍ଷା ହେଉଛନ୍ତି ।

**କଳିମଳ ପତିତାନାଂ ଶୋକମୋହାବୃତ୍ତାନାଂ**
**ନିଜ ଜନ ପତିସେବା ବିତ୍ତ ଚିନ୍ତା କୂଳାନାଂ ।**
**ଇତି ସମଜନି ଗୈ୍ୟରତ୍ରାଣ ହେତୁ ବିଚିନ୍ତ୍ୟ**
**ପ୍ରକଟ ମଧୁର ଦେହୋ ନାମ ଦାତା କୃପାଳୁଃ ।୪।**

କଳିକଲ୍ମଷ ସାଗରେ ନିପତିତ ଏବଂ ଶୋକମୋହରେ ଅଭିଭୂତ, ଆତ୍ମୀୟ କୁଟୁମ୍ବ ଏବଂ ପତିପୁତ୍ର ସେବାରେ ନିରତ ବିତ୍ତ ଚିନ୍ତାକୂଳମାନଙ୍କୁ ଦେଖି ହରିନାମଦାତା ପରମଦୟାଳୁ ଶ୍ରୀ ଶ୍ରୀ ଗୌରଚନ୍ଦ୍ର, ସେମାନଙ୍କର ଉଦ୍ଧାର ଉପାୟ (ଐକାନ୍ତିକ ହରିଭକ୍ତି ଏବଂ ଶ୍ରୀଭଗବାନ୍ନାମାଶ୍ରୟ)ଚିନ୍ତା କରି ଶଚୀନନ୍ଦ ଗୌରହରି ପରମସୁନ୍ଦର ଦେହଧରି ଶ୍ରୀଧାମ ନବଦ୍ୱୀପରେ ଅବତୀର୍ଣ୍ଣ ହେଲେ ।

**ଶ୍ରୀ ଶ୍ରୀମତ୍ କୃଷ୍ଣଚୈତନ୍ୟେ ଜଗତ୍‌ତ୍ରାଣୈକ କର୍ତ୍ତରି ।**
**ଯୋମୂଢ଼େ ଭକ୍ତିହୀନସ୍ୟାତ୍ ପଚ୍ୟତେ ନରକେ ଧ୍ରୁବମ୍ ।୫।**

ଶ୍ରୀ ଶ୍ରୀମଦ୍ କୃଷ୍ଣଚୈତନ୍ୟ ମହାପ୍ରଭୁ ଜଗଜ୍ଜୀବଙ୍କର ତ୍ରାଣକର୍ତ୍ତା । ଯେଉଁ ମୂଢ଼ ମୂଢ଼ତାବଶତଃ ତାଙ୍କ ଚରଣ କମଳରେ ଭକ୍ତି କରେ ନାହିଁ ସେ ନାନାବିଧ ଦୁଃଖପ୍ରଦ ନରକପ୍ରାପ୍ତ ହୁଏ ।

**ଯଃ କୃଷ୍ଣରାଧୟାକୁଞ୍ଜେ ବିଳାସ କୃତବାନ୍ ପୁରା ।**
**ଗଦାଧରେଣ ସଂଯୁକ୍ତଃ ସ ଗୌରଃ ବସତେ ଭୁବି ।୬।**

ଯେଉଁ ଶ୍ରୀକୃଷ୍ଣ ପୂର୍ବେ (ଦ୍ୱାପରରେ) ରାଧାରାଣୀଙ୍କର କୁଞ୍ଜରେ ବିଳାସ କରିଥିଲେ । ବର୍ତ୍ତମାନ ସିଏ ଗଦାଧରଙ୍କ ସହ ଯୁକ୍ତହୋଇ ଅବନିମଣ୍ଡଳରେ ଲୀଳାବିଳାସ କରୁଛନ୍ତି ।

**ସଂସାର ସର୍ପଦଷ୍ଟାନାଂ ମୂର୍ଚ୍ଛିତାନାଂ କଳୌଯୁଗେ ।**
**ଔଷଧଂ ଭଗବନ୍ନାମଂ ଶ୍ରୀବୈଷ୍ଣବ ସେବନମ୍ ।୭।**

ଏହି କଳିଯୁଗରେ ସଂସାରରୂପ ସର୍ପଦଂଶିତ ହୋଇ ମାୟାଦ୍ୱାରା ମୂର୍ଚ୍ଛିତ ପ୍ରାଣୀମାନଙ୍କର ହରିନାମ ସଂକୀର୍ତ୍ତନ ଏବଂ ବୈଷ୍ଣବ ସେବା ହିଁ ପରମ ଔଷଧ ।

**ବିଷୟାବିଷ୍ଟ ମୂର୍ଖାଣାଂ ଚିତ୍ତସଂସ୍କାରମୌଷଧମ୍ ।**
**ବିଶ୍ରମ୍ଭେଣ ଗୁରୋଃ ସେବା ବୈଷ୍ଣବୋଚ୍ଛିଷ୍ଟ ଭୋଜନମ୍ ।୮।**

ବିଷୟାବିଷ୍ଟ ମୂର୍ଖମାନଙ୍କର ଚିତ୍ତଶୋଧନରେ ଏକମାତ୍ର ମହୌଷଧ ସୁଦୃଢ଼ ବିଶ୍ୱାସରେ ଶ୍ରୀଗୁରୁସେବା ଏବଂ ବୈଷ୍ଣବୋଚ୍ଛିଷ୍ଟ ଭୋଜନ ।।

**ବନ୍ଦେ ଶ୍ରୀକରୁଣାସିନ୍ଧୁଂ ଶ୍ରୀଚୈତନ୍ୟଂ ମହାପ୍ରଭୁମ୍ ।**
**କୃପାଂ କୁରୁ ଜଗନ୍ନାଥ ! ତବ ଦାସ୍ୟଂ ଦଦସ୍ୱ ମେ ।୯।**

କରୁଣାସିନ୍ଧୁ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କୁ ମୁଁ ବନ୍ଦନା କରୁଛି । ହେ ଜଗନ୍ନାଥ କୃପା କରନ୍ତୁ ଏବଂ ଆପଣଙ୍କର ଦାସ୍ୟ ପ୍ରଦାନ କରନ୍ତୁ ।

**ଦାସ୍ୟଂ ତେ କୃପୟା ନାଥ ! ଦେହି ଦେହି ମହାପ୍ରଭୋ ।**
**ପତିତାନାଂ ପ୍ରେମଦାତାଽସ୍ୟହେତୋ ଯାଚେ ପୁନଃ ପୁନଃ ।୧୦।**

ହେ ମହାପ୍ରଭୁ, ଆପଣ ପତିତମାନଙ୍କର ପ୍ରେମଦାତା, ଏଣୁ ମୁଁ ବାରମ୍ବାର ପ୍ରାର୍ଥନା କରୁଛି । ହେ ନାଥ କୃପାକାରି ନିଜର ଦାସ୍ୟ ପ୍ରଦାନ କରନ୍ତୁ ।

**ସଂସାର ସାଗରେ ମଗ୍ନଂ ପତିତଂ ତ୍ରାହି ମାଂ ପ୍ରଭୋ**

**ଦୀନୋଦ୍ଧାରେ ସମର୍ଥ ସ୍ତ୍ୱମସ୍ତେ ଶରଣଂ ଗତଃ ।୧୧।**

ହେ ପ୍ରଭୁ ! ସଂସାର ସାଗରରେ ମଗ୍ନ, ମୁଁ ଜଣେ ପତିତ ଓ ଅଧମ - ଆପଣ ଦୀନଜନ ଉଦ୍ଧାର ପାଇଁ ସମର୍ଥ । ଏଣୁ ମୁଁ ଶରଣାଗତ ମୋତେ ତ୍ରାଣ କରନ୍ତୁ ।

**ଜଗତାଂ ତ୍ରାଣକର୍ତ୍ତାସି ଭର୍ତ୍ତା ଦାତାସି ସମ୍ପଦାମ୍ ।**

**ତ୍ରାଣଂ କୁରୁଷ୍ୱ ଭୋ ନାଥ ! ଦାସ୍ୟଂ ଦେହି ଶଚୀସୁତଃ ।୧୨।**

ଆପଣ ଜଗତର ତ୍ରାଣକର୍ତ୍ତା ଅଟନ୍ତି, ସ୍ୱଭକ୍ତି ସମ୍ପଦ ଦାନକରି ଭରଣପୋଷଣ କରୁଥିବାରୁ ଦାତାଭର୍ତ୍ତା ଅଟନ୍ତି । ହେ ନାଥ ! ତ୍ରାଣ କରନ୍ତି । ହେ ଶଚୀସୁତ ! ସ୍ୱ ଚରଣକମଳର ଦାସ୍ୟ ପ୍ରଦାନ କରନ୍ତି ।

**ସର୍ବେଷାମବତାରାଣାଂ ପୁରାଣୈର୍ଯତ୍ ଶ୍ରୁତଂ ଫଳଂ ।**

**ତସ୍ମାନ୍ମେ ନିଷ୍କୃତିର୍ନାସ୍ତି ଅତସ୍ତେ ଶରଣଂ ଗତଃ ।୧୩।**

ସମସ୍ତ ଅବତାରମାନଙ୍କ ମହିମା ପୁରାଣଗୁଡ଼ିକରେ ଯାହା ମୁଁ ଶୁଣିଅଛି, ତାହାଦ୍ୱାରା ମୋଭଳି ଅଧମର ନିସ୍ତାରହେବା ସମ୍ଭବ ନାହିଁ, ଏଣୁ ମୁଁ ଆପଣଙ୍କର ଶରଣାଗତ ହୋଇଛି ।

**ବିଚିତ୍ର ମଧୁରାକ୍ଷର ଶ୍ରୁତିମନୋଜ୍ଞ ଗୀତେ ମୁଦା**

**ସ୍ୱଭକ୍ତଗଣମଣ୍ଡଳୀ ରଚିତମଦ୍ଧଗାମି ପ୍ରଭୁଃ ।**

**ମନୋହର ମନୋହରୋ ନଟତି ଗୌରଚନ୍ଦ୍ର ସ୍ୱୟଂ**

**ଜଗତ୍ରୟ ବିଭୂଷଣେ ପରମ ଧାମ ନୀଳାଚଳେ ।୧୪।**

ତ୍ରିଭୁବନର ବିଭୂଷଣସ୍ୱରୂପ ପରମଧାମ ନୀଳାଚଳରେ ନିଜ ଭକ୍ତଗଣ ସହ ମଣ୍ଡଳୀ ବଦ୍ଧକରି ବିଚିତ୍ର ମଧୁରାକ୍ଷର ଓ ଶ୍ରୁତିମନୋହର ସଂକୀର୍ତ୍ତନ ଗୀତଦ୍ୱାରା ଆନନ୍ଦରେ ସର୍ବଲୋକଙ୍କର ଚିତ୍ତ ବିମୋହନ କରି ସ୍ୱୟଂ ଶଚୀଗର୍ଭ ସିନ୍ଧୁରୁ ଉଦିତ ଗୌରଚନ୍ଦ୍ର ନୃତ୍ୟ କରୁଛନ୍ତି ।

**ବିଲୋକ୍ୟ ପୁରୁଷୋତ୍ତମଂ କନକଗୌରଦେହୋ ହରି**
**ର୍ମୁଦା ହୃଦୟ ପଙ୍କଜେ ଜଳଦକାନ୍ତି ଆଲିଙ୍ଗିତୁମ୍ ।**
**ପପାତ ଧରଣୀ ତଳେ ସକଳଭାବ ସଂମୂର୍ଚ୍ଛିତଃ**
**କଦାଚିଦପି ନେଙ୍ଗତେ ପରମଧାରୀ ସଂସ୍ପନ୍ଦନମ୍ ।୧୫।**

କନକକାନ୍ତି ଦେହଧାରୀ ଗୌରହରି ଶ୍ରୀଜଗନ୍ନାଥଦେବଙ୍କୁ ଦର୍ଶନ କରି ଆନନ୍ଦରେ ଜଳଦକାନ୍ତିଙ୍କୁ ହୃଦରେ ଆଲିଙ୍ଗନ କରିବାପାଇଁ ଜାଇ ସମସ୍ତଭାବରେ ସଂମୂର୍ଚ୍ଛିତ ହୋଇ ଭୂଲୁଣ୍ଠିତ ହୋଇପଡ଼ିଲେ - ସେହି ସମୟରେ ସେ ଗତିଶୂନ୍ୟ ହୋଇଯାଇଥିଲେ ଏବଂ ତାଙ୍କର ଚକ୍ଷୁଦ୍ୱୟ ସ୍ପନ୍ଦନଶୂନ୍ୟ ହୋଇଯାଇଥିଲା ।

**ଗୈ୍ୟରସ୍ୟ ନୟନେ ଧାରା ସଗଦ୍‌ଗଦ ବଚୋମୁଖେ ।**
**ପୁଲକାଙ୍କିତ ସର୍ବାଙ୍ଗୋ ଭାବେ ଲୁଠତି ଭୂତଳେ ।୧୬।**

ଶ୍ରୀଗୈ୍ୟରସୁନ୍ଦରଙ୍କର ନୟନରୁ ପ୍ରେମାଶ୍ରୁ ପତିତ ହେଉଥିଲା, ଶ୍ରୀମୁଖରୁ ଗଦ୍‌ଗଦ ବାଣୀ ଏବଂ ସର୍ବାଙ୍ଗ ପୁଲକରେ ପରିପୂର୍ଣ୍ଣ ହୋଇ ନିଜ ଭାବରେ ଭୂତଳେ ଲୁଣ୍ଠିତ ହୋଇଥିଲେ ।

**ଚୈତନ୍ୟଚରଣାମ୍ଭୋଜେ ଯସ୍ୟାସ୍ତି ପ୍ରୀତିରଚ୍ୟୁତା ।**
**ବୃନ୍ଦାଟବୀ ଶୟୋ ତସ୍ୟ ଭକ୍ତିସ୍ୟାଚ୍ଛତ ଜନ୍ମନି ।୧୭।**

ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁଙ୍କର ଚରଣକମଳରେ ଯାହାର ଅଚଳା ପ୍ରୀତି ଅଛି, ତାହାର ଶତ ଜନ୍ମ ପର୍ଯ୍ୟନ୍ତ ବୃନ୍ଦାବନ ବିହାରୀ ରାଧାଗୋବିନ୍ଦଙ୍କ ଚରଣକମଳରେ ଭକ୍ତି ରହେ ।

**ଯଥା ରାଧାପଦାମ୍ଭୋଜେ ଭକ୍ତିଃସ୍ୟାତ୍ ପ୍ରେମଲକ୍ଷଣା ।**
**ତଥୈବ କୃଷ୍ଣଚୈତନ୍ୟେ ବର୍ଦ୍ଧତେ ମାଧୁରା ରତିଃ ।୧୮।**

ଯାହାର ଯେଉଁ ପରିମାଣରେ ଶ୍ରୀରାଧାଙ୍କର ପାଦପଦ୍ମରେ ପ୍ରେମଲକ୍ଷଣା ଭକ୍ତି ଉଦୟ ହୁଏ, ସେହି ପରିମାଣରେ ତାହାର ଶ୍ରୀକୃଷ୍ଣଚୈତନ୍ୟଙ୍କ ଚରଣରେ ମଧୁର ପ୍ରେମଭକ୍ତି ବର୍ଦ୍ଧିତ ହୋଇଥାଏ ।

**କନକ ମୁକୁରକାନ୍ତିଂ ଚାରୁବକ୍ତ୍ରାରବିନ୍ଦଂ**
**ମଧୁର ମୁକୁରହାସ୍ୟଂ ପକ୍ୱବିମ୍ବାଧରୋଷ୍ଠମ୍ ।**
**ସୁବଳିତ ଲଳିତାଙ୍ଗ କମ୍ବୁକଣ୍ଠନଟେନ୍ଦ୍ରଂ**
**ତ୍ରିଭୁବନ କମନୀୟଂ ଗୈୗରଚନ୍ଦ୍ରଂ ପ୍ରପଦ୍ୟେ ।୧୯।**

ଯାହାର ଶ୍ରୀମୁଖକମଳ କନକଦର୍ପଣର କାନ୍ତି ଧାରଣ କରିଛି । ପକ୍ୱବିମ୍ବ ଫଳ ସଦୃଶ ଅଧରଓଷ୍ଠରେ ସୁମଧୁର ହାସ୍ୟଯୁକ୍ତ, ସୁବଳିତ ଲଳିତ ଅଙ୍ଗ ଶୋଭା, କଣ୍ଠ ଶଙ୍ଖତୁଲ୍ୟ ନଟବର ରୂପ । ସେହି ତ୍ରିଭୁବନ କମନୀୟ ଗୌରଚନ୍ଦ୍ରଙ୍କୁ ମୁଁ ପ୍ରଣାମ କରୁଛି ।

**ସୁଦୀର୍ଘ ସୁମନୋହରଂ ମଧୁରକାନ୍ତି ଚନ୍ଦ୍ରାନନଂ**
**ପ୍ରଫୁଲ୍ଲ କମଳେକ୍ଷଣଂ ଦଶନପଂକ୍ତି ମୁକ୍ତାଫଳମ୍ ।**
**ସୁପୁଷ୍ପ ନବମଞ୍ଜରୀ ଶ୍ରବଣଯୁଗ୍ମ ସଦ୍‌ଭୂଷଣଂ**
**ପ୍ରଦୀପ୍ତ ମଣିକଙ୍କଣଂ କଷିତ ହୋମଗୈୗରଂ ଭଜେ ।୨୦।**

ଯାହାର ତନୁ ସୁଦୀର୍ଘ ଏବଂ ସୁନ୍ଦର ସୁବଳିତ, ମଧୁର କାନ୍ତିଯୁକ୍ତ ଚନ୍ଦ୍ରବଦନ, ପ୍ରସ୍ଫୁଟିତ କମଳ ସଦୃଶ ନେତ୍ର, ମୁକ୍ତାବିଜ ସଦୃଶ ଦନ୍ତ ପଂକ୍ତି, ସୁନ୍ଦର ପୁଷ୍ପ କଳିକା ନିର୍ମିତ କର୍ଣ୍ଣଭୂଷଣଯୁକ୍ତ କର୍ଣ୍ଣଯୁଗଳ, ହସ୍ତ ଦ୍ୱୟ, ମଣିକଙ୍କଣ ଦ୍ୱାରା ଦେଦିପ୍ୟମାନ, ଶତକଷିତ କାଞ୍ଚନର ବର୍ଣ୍ଣ ନିନ୍ଦାକାରୀ ପ୍ରେମମୟ ଗୌରସୁନ୍ଦରଙ୍କୁ ମୁଁ ଭଜନା କରୁଛି ।

ଅଖିଳଭୂବନ ବନ୍ଧୋ ପ୍ରେମସିନ୍ଧୋଜନେସ୍ମିନ୍
ସକଳ କପଟପୂର୍ଣ୍ଣେ ଜ୍ଞାନହୀନେ ପ୍ରପନ୍ନେ ।
ତବ ଚରଣ ସରୋଜ ଦେହି ଦାସ୍ୟଂ ପ୍ରଭୋତ୍ୱଂ
ପତିତୋରଣ ନାମ ପ୍ରାଦୁରାସୀତ୍ ଯତସ୍ତେ ।୨୧।

ହେ ଅଖିଳଭୂବନର ବନ୍ଧୁ ! ହେ ପ୍ରେମସିନ୍ଧୁ ! ସମସ୍ତ କପଟତାପୂର୍ଣ୍ଣ, ଜ୍ଞାନହୀନ ଏହି ଶରଣାଗତ ଜନକୁ- ହେ ପ୍ରଭୁ ଆପଣ ଆପଣଙ୍କର ଚରଣକମଳର ଦାସ୍ୟ ପ୍ରଦାନ କରନ୍ତୁ । ଯେହେତୁ ଆପଣ ପତିତପାବନ ନାମ ବୋଲାଉଅଛନ୍ତି ।

ଊର୍ଦ୍ଧ୍ୱକୃତ୍ୟ ଭୁଜଦ୍ୱୟଂ କରୁଣୟା ସର୍ବାନ୍ ଜନାନାଦିଶେତ୍
ରେ ରେ ଭାଗବତା ହରିଂ ବଦବଦ ଶ୍ରୀଗୌରଚନ୍ଦ୍ରସ୍ୱୟମ୍ ।
ପ୍ରେମ୍ଣା ନୃତ୍ୟତି ହୁଙ୍କୃତିଂ ବିକୁରୁତେ ହା ହା ରବୈର୍ବ୍ୟାକୁଳୋ ।
ଭୂମୌ ଲୁଣ୍ଠତି ମୂର୍ଚ୍ଛତି ସ୍ୱହୃଦୟେ ହସ୍ତୌ ବିନିକ୍ଷିପ୍ୟତି ।୨୨।

ସ୍ୱୟଂ ଭଗବାନ ଗୌରଚନ୍ଦ୍ର ଆଜାନୁଲମ୍ବିତ ଭୂଜଦ୍ୱୟ ଊର୍ଦ୍ଧ୍ୱକୁ ଉତ୍ତୋଳନ କରି ସମସ୍ତ ଲୋକମାନଙ୍କୁ ଆଦେଶ କରୁଛନ୍ତି, ''ହେ ଭାଗବତଗଣ ! କେବଳ ହରି ହରି ବୋଲ ।'' ଏହା କହି ପ୍ରେମବିବଶ ହୋଇ ନୃତ୍ୟ କରୁଛନ୍ତି, ହୁଙ୍କାର କରୁଛନ୍ତି - ହା ହା ଶବ୍ଦ କରି ବ୍ୟାକୁଳ ହେଉଛନ୍ତି । ମୂର୍ଚ୍ଛିତ ହୋଇ ଭୂମିରେ ଲୁଣ୍ଠିତ ହେଉଛନ୍ତି ଏବଂ ବକ୍ଷସ୍ଥଳରେ କରାଘାତ କରୁଛନ୍ତି ।

ହରେ ନାମ-କୃଷ୍ଣନାମ-ଗାନ-ଦାନ-କାରିଣୀଂ
ଶୋକ ମୋହଲୋଭତାପ ସର୍ବବିଘ୍ନନାଶିନାମ୍ ।
ପାଦପଦ୍ମଲୁବ୍ଧ ଭକ୍ତବୃନ୍ଦ ଭକ୍ତିଦାୟିନୀଂ
ଗୌରମୂର୍ତ୍ତିମାଶୁ ନୈ୍ୟମି ନାମ ସୂତ୍ରଧାରିଣୀମ୍ ।୨୩।

ଯିଏ ଶୋକମୋହଲୋଭ ତାପତ୍ରୟ ଏବଂ ସର୍ବବିଧ ବିଘ୍ନବିନାଶକାରୀ ଭୂବନ ମଙ୍ଗଳ ହରେକୃଷ୍ଣ ନାମ ଗାନ କଳିହତ ଜୀବଙ୍କୁ ଦାନ କରିଛନ୍ତି - ତାଙ୍କର ପାଦପଦ୍ମ ମଧୁଲୋଲୁପ ନିଜ ଭକ୍ତଜନମାନଙ୍କୁ ପ୍ରେମଭକ୍ତି ପ୍ରଦାନ କରିଛନ୍ତି ଏବଂ ସ୍ୱୟଂ ହରିନାମ ମାଳା ଗଳଦେଶେ ଧାରଣ କରିଛନ୍ତି । ସେହି ଗୌରମୂର୍ତ୍ତିଙ୍କୁ ମୁଁ ଶୀଘ୍ର ସସଂମ୍ଭ୍ରମରେ ପ୍ରଣାମ କରୁଅଛି ।

**ମାଳତୀ ମଲ୍ଲିକା-ଦାମବଦ୍ଧ କୁଞ୍ଚିତ କୁନ୍ତଳମ୍ ।**
**ଭାଲୋଦ୍ୟତ୍ତିଳକଂ ଗଣ୍ଡ ରତ୍ନ କୁଣ୍ଡଳମଣ୍ଡିତମ୍ ।୨୪।**

ତାଙ୍କର କୁଞ୍ଚିତ କୁନ୍ତଳ ମାଳତୀମଲ୍ଲିକା ମାଳଦ୍ୱାରା ପରିବେଷ୍ଟିତ, ପ୍ରଶସ୍ତ ଲଲାଟ ଦେଶରେ ସୁନ୍ଦର ତିଳକ ଓ ଗଣ୍ଡଦେଶରେ ରତ୍ନକୁଣ୍ଡଳ ଦୋଳାୟମାନ ହୋଇ ସୁଶୋଭିତ ହେଉଛି ।

**ଶ୍ରୀଖଣ୍ଡାଗୁରୁଲିପ୍ତାଙ୍ଗ କଙ୍କଣାଙ୍ଗଦ ଭୂଷିତଂ ।**
**କ୍ୱଣନ୍ ମଞ୍ଜୀର ଚରଣଂ ଗୌରଚନ୍ଦ୍ରମହଂ ଭଜେ ।୨୫।**

ଯାହାର ଶ୍ରୀଅଙ୍ଗ ଅଗୁରୁ ଚନ୍ଦନ ଦ୍ୱାରା ବିଲେପିତ ଏବଂ କଙ୍କଣ ଅଙ୍ଗଦ ଆଦି ଭୂଷଣେ ବିଭୂଷିତ ଏବଂ ଶ୍ରୀଚରଣ ସୁମଧୁର ମଞ୍ଜୀର ଶିଞ୍ଜନେ ଶିଞ୍ଜିତ, ସେଇ ଶ୍ରୀଗୌରଚନ୍ଦ୍ରଙ୍କୁ ମୁଁ ଭଜନା କରୁଅଛି ।

**ମଧୁରଂ ମଧୁରଂ କନକାଭତନୁମରଣାମ୍ବର ସତ୍ପରିଧେୟ ମହୋ ।**
**ଜଗଦେକ ଶୁଭଂ ସକଲୈକପରଂ କରଣାପ୍ରବଣଂ ଭଜ ତଂ ପରମମ୍ ।୨୬।**

ଆହା ! କି ସୁନ୍ଦର ମଧୁର ମଧୁର କନକଆଭାଯୁକ୍ତ ତନୁ-ପରିଧାନେ ସୁନ୍ଦର ଅରଣ ବର୍ଣ୍ଣ ବସନ-ସେହିଁ ଜଗତର ଏକମାତ୍ର ଶୁଭଜାତ, ଦୀନଦୟାମୟ, ପରମକାରୁଣୀକ ଏବଂ ସର୍ବଶ୍ରେଷ୍ଠ ଭଜନୀୟ ତତ୍ତ୍ୱ, ତାଙ୍କୁ ହିଁ ଭଜନ କର ।

**କୃଷ୍ଣରୂପଂ ପରିତ୍ୟଜ୍ୟ କଲୈ୍ୟ ଗୈ୍ୟରବଭୂବ ଯଃ ।**
**ତଂ ବନ୍ଦେ ପରମାନନ୍ଦଂ ଶ୍ରୀଚୈତନ୍ୟ ମହାପ୍ରଭୁମ୍ ।୨୭।**

ଯିଏ ଦ୍ୱାପରର କୃଷ୍ଣରୂପକୁ ପରିତ୍ୟାଗ କରି କଳିଯୁଗରେ ଗୌରାଙ୍ଗ ହୋଇଛନ୍ତି, ସେହି ପରମାନନ୍ଦମୟ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କୁ ମୁଁ ବନ୍ଦନା କରୁଅଛି ।

**ପୀତାଂଶୁକଂ ପରିତ୍ୟଜ୍ୟ ଶୋଣାମ୍ବର ଧରୋତି ଯଃ ।**

**ତଂ ଗୌରଂ କରୁଣାସିନ୍ଧୁମାଶ୍ରୟେ ଭୁବନାଶ୍ରୟମ୍ ।୨୮।**

ଯିଏ ପିତାମ୍ବର ପରିତ୍ୟାଗ କରି ଅରୁଣାମ୍ବର ଧାରଣ କରିଛନ୍ତି, ସେହି ପରମ କରୁଣାସିନ୍ଧୁ ତ୍ରିଭୁବନର ଆଶ୍ରୟ ଶ୍ରୀଗୌରସୁନ୍ଦରଙ୍କୁ ମୁଁ ଆଶ୍ରୟ କରୁଛି ।

**ଅବତୀର୍ଣ୍ଣ ପୁନଃ କୃଷ୍ଣୋ ଗୌରଚନ୍ଦ୍ର ସନାତନଃ ।**

**ମଗ୍ନାସ୍ତି ଭାଗ ପାପେସ୍ମିନ୍ ତେଷାଂ ତ୍ରାଣସ୍ୟ ହେତବେ ।୨୯।**

ଏହି ପୃଥିବୀ ଯେତେବେଳେ ତ୍ରିପାଦ ପାପରେ ପରିପୂର୍ଣ୍ଣ ହୋଇଥିଲା, ସେତେବେଳେ ସଂସାର ସାଗରସ୍ଥ କଳିହତ ଜୀବମାନଙ୍କର ପରିତ୍ରାଣ ହେତୁ ସନାତନ ଶ୍ରୀକୃଷ୍ଣ ଶ୍ରୀଗୌରରୂପେ ଅବତୀର୍ଣ୍ଣ ହୋଇଛନ୍ତି ।

**ଅବତୀର୍ଣ୍ଣେ କଳୌ ଗୌରେ ଚଣ୍ଡାଳାଦ୍ୟାଃ କୁଜାତୟଃ ।**

**ଯାବନ୍ତ ପାପିନଶ୍ଚାପି ପ୍ରାୟସୋ ବୈଷ୍ଣବା ଅମୀ ।୩୦।**

ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଏହି କଳିଯୁଗରେ ଅବତୀର୍ଣ୍ଣ ହେଲେ ସମଗ୍ର ଚଣ୍ଡାଳାଦି ନୀଚଜାତି ଏବଂ ମହାପାପୀ ସକଳ ବୈଷ୍ଣବ ହୋଇଯାଇଥିଲେ ।

**ପତିତଂ ଦୁର୍ଗତଂ ଦୃଷ୍ଟ୍ୱା ବୈଷ୍ଣବା ଲୋକପାବନାଃ ।**

**କରୌ ଧୃତ୍ୱା ହରେର୍ନାମ ଯାଚନ୍ତି କୃପୟା କଳୌ ।୩୧।**

ଏହି କଳିକାଳରେ ଗୌରଙ୍କର କୃପାପ୍ରାପ୍ତ ବୈଷ୍ଣବ ସକଳ ସଂସାର ବନ୍ଧନରେ ଆବଦ୍ଧ ବ୍ୟକ୍ତିଗଣଙ୍କୁ ପତିତ ଏବଂ ଦୁର୍ଗତିଗ୍ରସ୍ତ ଦେଖି କୃପାପରବଶହୋଇ ହାତେ ଧରି ଯାଚି ଯାଚି ହରିନାମ ମହାମନ୍ତ୍ର ହେଉଛନ୍ତି ।

**ସଙ୍କିର୍ତ୍ତନାରମ୍ଭ କୃତେଽପି ଗୌୖରେ ଧାବନ୍ତି ଜୀବ ଶ୍ରବଣେ ଗୁଣାନି ।**
**ଅଶୁଦ୍ଧ ଚିତ୍ତାଃ କିମୁ ଶୁଦ୍ଧଚିତ୍ତାଃ ଶ୍ରୁତ୍ୱା ପ୍ରମତ୍ତାଃ ଖଲୁତେ ନନର୍ତ୍ତୁଃ ।୩୨।**

ଯେତେବେଳେ ଶ୍ରୀ ଶ୍ରୀ ଗୌୖରଚନ୍ଦ୍ର ଭୁବନମଙ୍ଗଳ ହରିନାମ ସଂକୀର୍ତ୍ତନର ଶୁଭାରମ୍ଭ କରିଲେ, ସେତେବେଳେ କଳିହତ ଜୀବଗଣ ତାଙ୍କର ଅଦ୍ଭୁତ ଗୁଣାବଳି ଶ୍ରବଣକରି ମୁଗ୍ଧ ହୋଇ ସେହି ହରିନାମ ଯଜ୍ଞସ୍ଥଳକୁ ଧାବିତ ହୋଇଥିଲେ । ଶୁଦ୍ଧ ଏବଂ ଅଶୁଦ୍ଧଚିତ୍ତ ସମସ୍ତ ଲୋକମାନେ ତାହା ଶ୍ରବଣରେ ପ୍ରମତ୍ତ ହୋଇ ନୃତ୍ୟ କରିଥିଲେ ।

**କିମାଶ୍ଚର୍ଯ୍ୟଂ କିମାଶ୍ଚର୍ଯ୍ୟଂ କଲୌ ଜାତେ ଶଚୀସୁତେ ।**
**ସ୍ତ୍ରୀ ବାଳ ଜଡ଼ମୂର୍ଖାଦ୍ୟାଃ ସର୍ବେ ନାମପରାୟଣାଃ ।୩୩।**

କି ଆଶ୍ଚର୍ଯ୍ୟ କି ଆଶ୍ଚର୍ଯ୍ୟ କଳିରେ ଶଚୀସୁତ ନବଦ୍ୱୀପରେ ଆବିର୍ଭୂତ ହେବାଦ୍ୱାରା ଆବାଲବୃଦ୍ଧବନିତା ଜଡ଼ ମୂର୍ଖ ଆଦି ସମସ୍ତ ଲୋକ ହରିନାମପରାୟଣ ହୋଇପାରିଲେ ।

**ଚଣ୍ଡାଳ ଯବନା ମୂର୍ଖାଃ ସର୍ବେ କୁର୍ବନ୍ତି କୀର୍ତ୍ତନମ୍ ।**
**ହରେର୍ନାମ୍ନାଂ ଗୁଣାନାଞ୍ଚ ଗୌୖରେଜାତେ କଲୌ୍ୟ ଯୁଗେ ।୩୪।**

ଶ୍ରୀ ଶ୍ରୀ ଗୌୖରଚନ୍ଦ୍ର ଉଦୟ ହେବାଯୋଗୁଁ ଚଣ୍ଡାଳ, ଯବନ ଏବଂ ମୂର୍ଖାଦି ସମସ୍ତେ ହରିନାମ ଗୁଣାନୁକୀର୍ତ୍ତନ କରିବାରେ ଲାଗିଲେ ।

**କିମଦ୍ଭୁତଂ ଗୌୖରହରେଶ୍ଚରିତ୍ରଂ**
**ତତୋଧିକଂ ତତ୍‌ପ୍ରିୟ ସେବକାନାମ୍ ।**
**ସଂକୀର୍ତ୍ତନାମୋଦ ଜନାନୁଗୁଣ**
**ପ୍ରେମ ପ୍ରଦାନଂ ବିତନୋତି ଲୋକେ ।୩୫।**

ଶ୍ରୀଗୌୖରହରିଙ୍କର କରୁଣାର ଚରିତ୍ର କି ଅଦ୍ଭୁତ ! କିନ୍ତୁ ତଦପେକ୍ଷା ତାଙ୍କର ନିତ୍ୟାନନ୍ଦ, ହରିଦାସ ଆଦି ପ୍ରିୟ ସେବକଗଣଙ୍କର ଚରିତ୍ର ଅତ୍ୟଦ୍ଭୁତ । ଭଗବନ୍ନାମ କୀର୍ତ୍ତନରେ ଆନନ୍ଦିତ ହୋଇ ଗଣସହ

କୀର୍ତ୍ତନକାରୀ ଲୋକମାନଙ୍କ ପ୍ରତି ଅନୁରାଗ ହୋଇ ସମସ୍ତ ଲୋକମାନଙ୍କୁ ପ୍ରେମ ପ୍ରଦାନ କରୁଛନ୍ତି ।

**ସୁବଳିତମଣିମାଳୈ ବଦ୍ଧଚୂଡ଼ଂ ମନୋଜ୍ଞ**
**ସୁଲଳିତ ମୃଦୁଭାଲେ ଚନ୍ଦନେନାନୁଚିତ୍ରମ୍ ।**
**ଶ୍ରବଣ ଯୁଗଳ ରନ୍ଧ୍ରେ କୁଣ୍ଡଳୈ୍ୟ ଯସ୍ୟଭାତ୍ୟୈ**
**ହୃଦି ବିନିହିତ ହାରଂ ନୌ୍ୟମିତଂ ଗୌ୍ୟରଚନ୍ଦ୍ରମ୍ ।୩୬।**

ଯାହାର ମନୋହର କୁନ୍ତଳର ଚୂଡ଼ା ସୁବଳିତ ମଣିମାଳାଦ୍ୱାରା ଆବଦ୍ଧ । ସୁଲଳିତ ଲଲାଟ ଚନ୍ଦନଦ୍ୱାରା ଅନୁଚିତ୍ରିତ ହୋଇଛି । କର୍ଣ୍ଣରନ୍ଧ୍ରଦ୍ୱୟରେ କୁଣ୍ଡଳଯୁଗଳ ଶୋଭାୟମାନ ହେଉଛି, ଯାହାର ବିସ୍ତୀର୍ଣ୍ଣ ବକ୍ଷସ୍ଥଳରେ ମଣିମୁକ୍ତା ଓ ପୁଷ୍ପହାର ଶୋଭାୟମାନ ହେଉଛି । ସେହି ଗୌ୍ୟରଚନ୍ଦ୍ରଙ୍କୁ ମୁଁ ପ୍ରଣାମ କରୁଅଛି ।

**ଚୈତନ୍ୟ ରୂପଗୁଣକର୍ମ ମନୋଜ୍ଞ ବେଶଂ**
**ଯଃ ସର୍ବଦା ସ୍ମରତି ଦେହମନୋ ବଚୋଭିଃ ।୩୭।**

ଯିଏ କାୟମନୋବାକ୍ୟ ଦ୍ୱାରା ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁଙ୍କର ରୂପ ଗୁଣ ଲୀଳା ଏବଂ ମନୋଜ୍ଞବେଶ ସ୍ମରଣ କରେ, ମୁଁ ତାହାର ପାଦପଦ୍ମ ତଳରଜ ଅଭିଳାଷକରି ବନ୍ଧୁପୁତ୍ରାଦିଙ୍କ ସହିତ ଶତଜନ୍ମ ପର୍ଯ୍ୟନ୍ତ ତାଙ୍କର ସେବା କରିବି ।

**ଇୟଂ ରସଜ୍ଞା ତବନାମ କୀର୍ତ୍ତନେ,**
**ଶ୍ରୋତ୍ରେ୍ୟ ମନୋ ମେ ଶ୍ରବଣେଽନୁ ଚିନ୍ତନେ ।**
**ନେତ୍ରେ ଚ ତେ ରୂପ ନିରିକ୍ଷଣେ ସଦା**
**ଶିରସ୍ତୁ ଚୈତନ୍ୟ ପାଦାଭିବନ୍ଦନେ ।୩୮।**

ହେ ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୋ ! ମୋର ଏଇ ରସନା ସଦାସର୍ବଦା ତୁମ ନାମ କୀର୍ତ୍ତନ କରୁ, କର୍ଣ୍ଣଦ୍ୱୟ ତୁମ ନାମ, ଗୁଣ, କର୍ମ ଶ୍ରବଣ କରୁ

ଏବଂ ମନ ସଦାସର୍ବଦା ନାମ, ଗୁଣ, କର୍ମ ସ୍ମରଣ କରୁ । ନେତ୍ରଦ୍ୱୟ ସଦା ତୁମର ରୂପ ଦର୍ଶନ କରୁ, ଶିର ତୁମର ଶ୍ରୀଚରଣ ବନ୍ଦନ କରୁଥାଉ ।

**ସଙ୍କୀର୍ତ୍ତନାନନ୍ଦ ରସ ସ୍ୱରୂପାଃ**
**ପ୍ରେମ ପ୍ରଦାନୈଃ ଖଲୁ ଶୁଦ୍ଧଚିତ୍ତାଃ ।**
**ସର୍ବେ ମହାନ୍ତଃ କିଳ କୃଷ୍ଣତୁଲ୍ୟାଃ**
**ସଂସାର ଲୋକାନ୍ ପରିତାରୟନ୍ତି ।୩୯ ।**

ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁଙ୍କର ଭକ୍ତଗଣ ସମସ୍ତେ ମହାତ୍ମା-ସେମାନେ ପ୍ରତ୍ୟେକେ ସଙ୍କୀର୍ତ୍ତନାନନ୍ଦ ରସର ଘନିଭୂତରସ ସ୍ୱରୂପ, ପ୍ରେମପ୍ରଦାନ କରିବାପାଇଁ ସମର୍ଥ, ସମସ୍ତେ ନିର୍ମଳାନ୍ତକରଣ ଏବଂ କୃଷ୍ଣତୁଲ୍ୟ । ମୁକୁନ୍ଦ ପ୍ରେଷ୍ଠ ମୁକୁନ୍ଦ ବତ୍ - ଭ:ର:ସି) ସେମାନେ ତ୍ରିତାପ ଦଗ୍ଧ ଜୀବମାନଙ୍କୁ ଭକ୍ତିପ୍ରଦାନ କରି ପରିତ୍ରାଣ କରୁଛନ୍ତି ।

**ଯସ୍ମିନ୍ ଦେଶେ କୁଳାଚାରୋ ଧର୍ମାଚାରଶ୍ଚ ନାସ୍ତିବୈ ।**
**ତଥାପି ଧନ୍ୟସ୍ତଦ୍ଦେଶୋ ନାମ ସଙ୍କୀର୍ତ୍ତନାଦ୍ଧରେଃ ।୪୦ ।**

ଯଦି କୌଣସି ଦେଶ କୁଳାଚାର, ଧର୍ମାଚାର ବର୍ଜିତ ହୋଇଥାଏ । ତଥାପି ସେହିଦେଶରେ ଯଦି ହରିନାମ ସଙ୍କୀର୍ତ୍ତନ ଯଜ୍ଞ ଅନୁଷ୍ଠିତ ହୁଏ ତେବେ ସେହି ଦେଶ ଓ ଦେଶବାସୀ ଧନ୍ୟ ।

**ଯାବତାଞ୍ଚ କୁତନ୍ତ୍ରାଣା ସମୁଦ୍ଧାରସ୍ୟ ହେତବେ ।**
**ଅବତୀର୍ଣ୍ଣ କଳୌ କୃଷ୍ଣଚୈତନ୍ୟୋ ଜଗତାଂ ପତିଃ ।୪୧ ।**

ଯେଉଁ ସମସ୍ତ କୁତନ୍ତ୍ରୀ (ଭକ୍ତିହିନ, ଭୁତପ୍ରେତ ଯକ୍ଷ ଉପାସକ, ମଦ୍ୟ ମାଂସଦ୍ୱାରା ହିଂସା ପରାୟଣ ବ୍ୟକ୍ତି) ସମୁଦାୟ ଉଦ୍ଧାର କରିବାପାଇଁ ଜଗତ୍‌ପତି ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁ ଏହି କଳିକାଳରେ ନବଦ୍ୱୀପରେ ଆବିର୍ଭାବ ହୋଇଛନ୍ତି ।

ସର୍ବାବତାର ଭଜତାଂ ଜନାନାଂ,
ତ୍ରାତୁଂ ସମର୍ଥାଃ କିଳ ସାଧୁବାର୍ତ୍ତା ।
ଭକ୍ତା ନଭକ୍ତାମପି ଗୈ୍ୟରଚନ୍ଦ୍ର
ସ୍ତତାର କୃଷ୍ଣାମୃତନାମ ଦାନୈଃ ।୪୨।

ସାଧୁଗଣଙ୍କର ଠାରୁ ଶୁଣାଯାଏ ଯେ ଅନ୍ୟାନ୍ୟ ଅବତାର ମାନଙ୍କରେ ଶ୍ରୀଭଗବାନ ଭୂତଳେ ଅବତୀର୍ଣ୍ଣ ହୋଇ କେବଳ ମାତ୍ର ତାଙ୍କର ଭଜନ କାରି ଭକ୍ତଗଣଙ୍କୁ ଉଦ୍ଧାର କରିଛନ୍ତି, କିନ୍ତୁ ଗୌରଚନ୍ଦ୍ର ଅବତୀର୍ଣ୍ଣ ହୋଇ ଭକ୍ତ ଅଭକ୍ତ (ଜଗାଇ, ମାଧୀ, ଚାପାଲ, ଗୋପାଳ, ଚାନ୍ଦକାଜି ପ୍ରଭୃତି) ସମସ୍ତଙ୍କୁ କୃଷ୍ଣନାମ ଦାନଦ୍ୱାରା ପରିତ୍ରାଣ କରିଛନ୍ତି ।

ଚୈତନ୍ୟ ପ୍ରେମଦାତାଖିଳ ଭୂବନ ଜନାନ୍ ଭାବହୁଙ୍କାର ନାଦୈ
ର୍ଗୋବିନ୍ଦାକୃଷ୍ଟଚିତ୍ତାନ୍ କୁବିଷୟ ବିରକ୍ତାନ୍ କାରୟାମାସ ଶୀଘ୍ରଂ ।
ଏବଂ ଶ୍ରୀଗୈ୍ୟରଚନ୍ଦ୍ରେ ଜଗତି ଚ ଜନିତେ ବଞ୍ଚିତୋ ଯହିର୍ମୁଖ
ସ୍ତାପୀ ପାପୀ ସୁରାପୀ ହରିଗୁରୁବିମୁଖ ସର୍ବଦା ବଞ୍ଚିତ ସଃ ।୪୩।

ପ୍ରେମଦାତା ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁ ପ୍ରେମଭାବେ ପ୍ରମତ୍ତ ହୋଇ ହୁଙ୍କାର ଗର୍ଜନ କରି ସମସ୍ତ ଲୋକଙ୍କୁ କୁବିଷୟରୁ ବିରତ କରି ଶ୍ରୀଗୋବିନ୍ଦ ବିଷୟରେ ଆକୃଷ୍ଟ ଚିତ୍ତ କରିଛନ୍ତି । ଏହିଭଳି ପରମଦୟାଳୁ ଶ୍ରୀଗୈ୍ୟରଚନ୍ଦ୍ର ଜଗତରେ ଅବତୀର୍ଣ୍ଣ ହୋଇଥିଲେ ମଧ୍ୟ ଯେ ମୁଢ ଓ ମୂର୍ଖ ତାଙ୍କର କୃପାଲାଭରୁ ବଞ୍ଚିତ ହୋଇଛନ୍ତି, ସେଇ ବ୍ୟକ୍ତି ହିଁ ପାପୀ, ତାପୀ, ସୁରାପାୟୀ ଏବଂ ହରିଗୁରୁ ବିମୁଖସେଇ ପ୍ରକୃତ ଭାବେ ସର୍ବବିଷୟେ ବଞ୍ଚିତ ।

ତ୍ରିଭୂବନ କମନୀୟେ ଗୈ୍ୟରଚନ୍ଦ୍ରେଽବତୀର୍ଣ୍ଣେ,
ପତିତ ଯବନ ମୂର୍ଖାଃ ସର୍ବଥା ସ୍ତୋଟୟନ୍ତ ।
ଇହ ଜଗତି ସମସ୍ତା ନାମ ସଙ୍କୀର୍ତ୍ତନାର୍ତ୍ତା
ବୟମପି ଚ କୃତାର୍ଥାଃ କୃଷ୍ଣନାମାଶ୍ରୟାତ୍ ।୪୪।

ଏହି ତ୍ରିଭୂବନ ସୁନ୍ଦର ଗୈ୍ୟରଚନ୍ଦ୍ର ନବଦ୍ୱୀପରେ ଅବତୀର୍ଣ୍ଣ ହେଲେ- ପତିତ, ଯବନ ଓ ମୂର୍ଖମାନେ ସମ୍ପୂର୍ଣ୍ଣରୂପେ ପ୍ରକାଶ କରିକହିଥିଲେ । ଏହି ସମସ୍ତ ଜଗତ ବର୍ତ୍ତମାନ କୃଷ୍ଣନାମରେ ଆନନ୍ଦିତ, ଆମ୍ଭେମାନେ ମଧ୍ୟ କୃଷ୍ଣନାମାଶ୍ରୟ ହେତୁ କୃତାର୍ଥ ।

**ମଧୁର ମଧୁର ମେତଦ୍ବୈଷ୍ଣବାନାଂ ଚରିତ୍ରଂ**
**କଲିମଳ କୃତହୀନାନ୍ ଦୋଷବୁଦ୍ଧ୍ୟା ନ ଜଗ୍ମୁଃ ।**
**ସକଳ ନିଗମସାରଂ ନାମଦାତୁଂ ଚ ତତ୍ର**
**ପ୍ରବଳ କରୁଣୟା ଶ୍ରୀଗୈ୍ୟରଚନ୍ଦ୍ରୋଽବତୀର୍ଣ୍ଣଃ ।୪୫।**

ଏହି ସମସ୍ତ ଗୈ୍ୟର ଭକ୍ତ ବୈଷ୍ଣବଗଣଙ୍କର ଚରିତ୍ରବଡ଼ ମଧୁର । ସେମାନେ କଳିହତ ପାପପଙ୍କରେ ମଗ୍ନହୀନ ଜୀବମାନଙ୍କର ଦୋଷ ବା ଅପରାଧ ବିଚାର କରନ୍ତି ନାହିଁ । ଯେହେତୁ ସେମାନଙ୍କ ନିକଟରେ (ନବଦ୍ୱୀପରେ) ସମସ୍ତ ବେଦର ସାର ହରିନାମ ସୁଧା ପ୍ରଦାନ କରିବାପାଇଁ ପ୍ରବଳ କରୁଣା ପରବଶହୋଇ ନିଖିଳ ବେଦାନ୍ତବେଦ୍ୟ (ଯଦାପଶ୍ୟ ପଶ୍ୟତି ରକ୍ତବର୍ଣ୍ଣ/କୃଷ୍ଣବର୍ଣ୍ଣଂ ତ୍ୱିଷାକୃଷ୍ଣଂ) କରୁଣାମୟ ଶ୍ରୀ ଶ୍ରୀ ଗୈ୍ୟରଚନ୍ଦ୍ର ଅବତୀର୍ଣ୍ଣ ହୋଇଥିଲେ ।

**ଲୋକାନ୍ ସମସ୍ତାନ୍ କଳିଦୁର୍ଗ ବାରିଧେ**
**ର୍ନାମ୍ନା ସମୁଦ୍ଧାର୍ଯ୍ୟ ସ୍ୱତଃ ସମର୍ପିତଂ ।**
**ଶ୍ରୀଗୈ୍ୟରଚନ୍ଦ୍ରୈର୍ହରି ବୈଷ୍ଣବାନାଂ**
**ନାମ୍ନଶ୍ଚ ତତ୍ତ୍ୱଂ କଥିତଂ ଜନେଜନେ ।୪୬।**

ଶ୍ରୀ ଶ୍ରୀ ଗୈ୍ୟରଚନ୍ଦ୍ର ଅତି ଦୁର୍ଗମ କଳି ସମୁଦ୍ରର କଳିହତ ଜୀବମାନଙ୍କୁ ସ୍ୱେଚ୍ଛାପୂର୍ବକ ହରିନାମାମୃତପ୍ରଦାନପୂର୍ବକ ଉଦ୍ଧାର କରି, ସେମାନଙ୍କୁ ପ୍ରତ୍ୟେକଙ୍କୁ ହରିନାମ ମାହାତ୍ମ୍ୟ (ନାମ ନାମି ଅଭିନ୍ନତ୍ୱ) ଓ ବୈଷ୍ଣବତତ୍ତ୍ୱ (ଅହଂଭକ୍ତ ପରଧୀନୋ/ଭବଦ୍ୱିଧା ଭାଗବତା/ଭବଦ୍ୱିଧା ମଭାଭାଗା ଇତ୍ୟାଦି) ବୁଝାଇ ଦେଇଥିଲେ ।

**ଯାବନ୍ତ ବୈଷ୍ଣବାଲୋକେ ପରିତ୍ରାଣସ୍ୟ ହେତବେ**

**ରଟନ୍ତି ପ୍ରଭୁନାଦିଷ୍ଟା ଦେଶେଦେଶେ ଗୃହେ ଗୃହେ ।୪୭।**

ଶ୍ରୀମନ୍ମହାପ୍ରଭୁଙ୍କ ଦ୍ୱାରା ଆଦିଷ୍ଟ ହୋଇ ଅନୁଗତ ବୈଷ୍ଣବ ସକଳ କଳିହତଜୀବମାନଙ୍କର ପରିତ୍ରାଣ ହେତୁ, ଦେଶେଦେଶେ ଘରେ ଘରେ ହରିନାମ ପ୍ରଚାର କରୁଛନ୍ତି ଏବଂ ନାମସୁଧା ପ୍ରଦାନ କରୁଛନ୍ତି ।

**ଜଗଦ୍ବନ୍ଧୋର୍ଜଗତ୍‌କର୍ତ୍ତା ଜଗତାଂ ତ୍ରାଣ ହେତବେ ।**

**ଯତ୍ର ତତ୍ର ହରେଃ ସେବା କୀର୍ତ୍ତନେ ସ୍ଥାପିତେ ସୁଖେ ।୪୮।**

ଶ୍ରୀ ଶ୍ରୀ ଗୌରଚନ୍ଦ୍ର ହିଁ ଜଗତ୍‌ବନ୍ଧୁ ଓ ଜଗତ୍‌କର୍ତ୍ତା । ଏହି ଜଗତର ପରିତ୍ରାଣ ପାଇଁ ଯେଉଁଠି ସେଇଠି ହରିସେବା (ଅର୍ଚ୍ଚା ବିଗ୍ରହ) ସ୍ଥାପନ ଓ ନାମଯଜ୍ଞର ଅନୁଷ୍ଠାନ କରିଛନ୍ତି ।

**ଗୌରାଙ୍ଗଃ ପ୍ରେମମୂର୍ତ୍ତିର୍ଜଗତି ଯଦବଧିପ୍ରେମଦାନଂ କରୋତି**

**ପାପୀ ତାପୀ ସୁରାପୀ ନିଖିଳଜନ ଧନ ସ୍ଥାପ୍ୟ ହାରୀ କୃତଘ୍ନଃ ।**

**ସର୍ବାନ୍ ଧର୍ମାନ୍ ସ୍ୱକୀୟାନ୍ ବିଷମିବ ବିଷୟଂ ସଂପରିତ୍ୟଜ୍ୟ କୃଷ୍ଣଂ**

**ଗାୟନ୍ତ୍ୟୁଚ୍ଚୈଃ ପ୍ରମତ୍ତାସ୍ତଦବଧି ବିକଳାଃ ପ୍ରେମସିନ୍ଧୌ ବିମଗ୍ନାଃ ।୪୯।**

ଯଦବଧି ପ୍ରେମମୂର୍ତ୍ତି ଶ୍ରୀ ଗୌରଙ୍ଗମହାପ୍ରଭୁ ଏଇ ଜଗତରେ ପ୍ରେମଦାନ କରୁଛନ୍ତି - ତଦବଧି ପାପୀ ତାପୀ ସୁରାପାୟୀ କୃତଘ୍ନ ଏବଂ ସ୍ଥାପ୍ୟଧନ ହରଣକାରୀ ମହାପାପୀ ସକଳ ସ୍ୱୀକୃତ କୁକର୍ମ ଏବଂ ବିଷୟବାସନା ବିଷବତ୍ ପରିତ୍ୟାଗ କରି ଉଚ୍ଚୈଃସ୍ୱରେ କୃଷ୍ଣନାମ କୀର୍ତ୍ତନ କରି ପ୍ରେମାନନ୍ଦେ ବିଭୋର ହୋଇ ସୁଖସାଗରରେ ନିମଗ୍ନ ହୋଇଛନ୍ତି ।

**ଯେଷାଂ କସ୍ମିନ୍ କଳିଯୁଗେ ନାଭୂନ୍ନିସ୍ତାରୋ ବହୁଜନ୍ମନି ।**

**କଲ୍ୟୈ ତେତେ ସୁଖେ ମଗ୍ନା ନାମ ଗାନ ପ୍ରସାଦତଃ ।୫୦।**

ଯେଉଁମାନଙ୍କର ପୂର୍ବ ପୂର୍ବ ଚତୁର୍ଯୁଗମାନଙ୍କର ବହୁଜନ୍ମରେ ନିସ୍ତାରର କୌଣସି ଉପାୟ ନଥିଲା- ସେମାନେ ହିଁ ଏହି କଳିକାଳରେ

ଶ୍ରୀମନ୍ମହାପ୍ରଭୁଙ୍କର ପ୍ରବର୍ତ୍ତିତ ଶ୍ରୀହରିନାମ-ଗାନର ପ୍ରସାଦରୁ ବର୍ତ୍ତମାନ ସୁଖସାଗରରେ ମଗ୍ନ ହୋଇଛନ୍ତି ।

**ହରେର୍ନାମ୍ନା ପ୍ରସାଦେନ ନିସ୍ତରେତ୍ ପାତକୀଜନଃ ।**
**ଉପଦେଷ୍ଟା ସ୍ୱୟଂ କୃଷ୍ଣଚୈତନ୍ୟୋ ଜଗଦୀଶ୍ୱର ।୫୧ ।**

ଶ୍ରୀ ହରିନାମ ଗାନ ଦ୍ୱାରା ହିଁ ସମସ୍ତ ପାତକୀ ଜନମାନେ ନିସ୍ତାର ପାଇବେ । କାରଣ ଏହାର ଉପଦେଷ୍ଟା ଅଖିଳବେଦାନ୍ତବେଦ୍ୟ ସ୍ୱୟଂ ଜଗନ୍ନାଥ ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁ ।

**ଅଖିଳ ଭୁବନ ବନ୍ଧୁର୍ନାମଦାତା କୃପାଳୁଃ**
**କଷିତ କନକବର୍ଣ୍ଣଃ ସର୍ବମାଧୁର୍ଯ୍ୟପୂର୍ଣ୍ଣଃ ।**
**ଅତି ସୁମଧୁର ହାସଃ ସ୍ନିଗ୍ଧଦୃକ୍ ପ୍ରେମଭାସଃ**
**ସ୍ଫୁରତୁ ହୃଦୟ ମଧ୍ୟେ ଗୌରଚନ୍ଦ୍ରୋନଟେନ୍ଦ୍ରଃ ।୫୨ ।**

ଶ୍ରୀ ଶ୍ରୀ ଗୌରଚନ୍ଦ୍ର ନିଖିଳଭୁବନର ବନ୍ଧୁ କାରଣ ସେ ପରମକୃପାଳୁ ଏବଂ ହରିନାମ ଦାତା । ତାଙ୍କର ଅଙ୍ଗକାନ୍ତି କନକବର୍ଣ୍ଣ ଏବଂ ସମସ୍ତ ମାଧୁର୍ଯ୍ୟର ବିଶ୍ରାମସ୍ଥଳ । ତାଙ୍କର ମୁଖରେ ସୁମଧୁର ହାସ୍ୟରେଖା, ଦୃଷ୍ଟି ଅତି ସ୍ନିଗ୍ଧ ଏବଂ ବାଣୀ ଅମୃତମୟ ଓ ପ୍ରେମପୂର୍ଣ୍ଣ । ସେହି ନଟେନ୍ଦ୍ର ଗୌରଚନ୍ଦ୍ର ମୋ ହୃଦୟ କନ୍ଦରରେ ସଦା ପ୍ରକାଶିତ ହୁଅନ୍ତି ।

**ଅତି ମଧୁର ଚରିତ୍ରଃ କୃଷ୍ଣନାମୈକ ମନ୍ତ୍ରୋ**
**ଭୁବନ ବିଦିତ ସର୍ବପ୍ରେମଦାତା ନିତାନ୍ତଃ ।**
**ବିପୁଳ ପୁଲକଧାରୀ ଚିତ୍ତହାରୀ ଜନାନାଂ**
**ସ୍ଫୁରତୁ ହୃଦୟ ମଧ୍ୟେ ଗୌରଚନ୍ଦ୍ରୋ ନଟେନ୍ଦ୍ରଃ ।୫୩।**

ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁଙ୍କର ଚରିତ୍ର ଅତି ସୁମଧୁର, ଯାହାର କୃଷ୍ଣ ନାମ ହିଁ ମହାମନ୍ତ୍ର । ତ୍ରିଭୁବନରେ ସର୍ବତ୍ର ଏକମାତ୍ର ପ୍ରେମଦାତା ବୋଲି ଯେ ବିଦିତ । ଶରୀର ପୁଲକାବଳିରେ ପରିପୁରିତ, ସେ ସର୍ବଚିତ୍ତାକର୍ଷକ ।

ସେହି ନଟେନ୍ଦ୍ର ଗୌରଚନ୍ଦ୍ର ମୋର ହୃଦୟ କନ୍ଦରରେ ସଦା ପ୍ରକାଶିତ ହୁଅନ୍ତୁ ।

**ସକଳ ନିଗମସାରଃ ପୂର୍ଣ୍ଣ ପୂର୍ଣ୍ଣାବତାରଃ**
**କଳି-କଲୁଶ ବିନାଶଃ ପ୍ରେମଭକ୍ତି ପ୍ରକାଶ ।**
**ପ୍ରିୟ ସହଚର ସଙ୍ଗେ ରଙ୍ଗଭଙ୍ଗ୍ୟା ବିଳାସୀ**
**ସ୍ଫୁରତୁ ହୃଦୟ ମଧ୍ୟେ ଗୌରଚନ୍ଦ୍ରୋ ନଟେନ୍ଦ୍ରଃ ।୫୪।**

ଶ୍ରୀ ଶ୍ରୀ ଗୌରଚନ୍ଦ୍ର ସକଳ ନିଗମର ସାର, ସିଏ ହିଁ ପୂର୍ଣ୍ଣ ଏବଂ ପୂର୍ଣ୍ଣାବତାର ସିଏ ହିଁ କଳିହତ ଜୀବମାନଙ୍କର ସମସ୍ତ କଲ୍ମଷ ନାଶ କାରି ଏବଂ ପ୍ରେମଭକ୍ତିର ପ୍ରକାଶକାରୀ । ପ୍ରିୟ ନିତ୍ୟ ପାର୍ଷଦ (ଗଦାଧର/ ନରହରିଆଦି) ସହଚରମାନଙ୍କ ସହ ବିଭିନ୍ନ ରଙ୍ଗଭଙ୍ଗୀରେ ବିଳାସକର୍ତ୍ତା, ସେହି ନଟେନ୍ଦ୍ର ଗୌରଚନ୍ଦ୍ର ମୋର ହୃଦୟ କନ୍ଦରରେ ସଦା ପ୍ରକାଶିତ ହୁଅନ୍ତୁ ।

**ଜଗଦତୁଳ ମନୋଜ୍ଞୋ ନାଟ୍ୟଲୀଳାଭିବିଜ୍ଞଃ**
**କଳିତ ମଧୁର ବେଶୈ ମୂର୍ଚ୍ଛିତାଶେଷ ଦେଶଃ ।**
**ପ୍ରବଳ ଗୁଣ ଗଭୀର ଶୁଦ୍ଧସତ୍ୱ ସ୍ୱଭାବଃ**
**ସ୍ଫୁରତୁ ହୃଦୟ ମଧ୍ୟେ ଗୌରଚନ୍ଦ୍ରୋ ନଟେନ୍ଦ୍ରଃ ।୫୫।**

ଶ୍ରୀ ଶ୍ରୀ ଗୌରଚନ୍ଦ୍ର ତ୍ରିଜଗତର ମଧ୍ୟେ ଅତୁଳନୀୟ ମନୋଜ୍ଞ, ଅଦ୍ୱିତୀୟ ନାଟ୍ୟଲୀଳାରସଜ୍ଞ - ତାଙ୍କର ଅତି ସୁମଧୁର ସ୍ନିଗ୍ଧୋଜ୍ଜଳ ଅପୂର୍ବ ବେଶ ଦର୍ଶନରେ ଅଶେଷ ଦେଶ ବାସି ସମ୍ମୋହିତ । ତାଙ୍କର ପ୍ରବଳ ଗୁଣଗ୍ରାମ, ଗଭୀର ଶୁଦ୍ଧସତ୍ତ୍ୱ ସ୍ୱଭାବ ବିମଣ୍ଡିତ ଗୌରଚନ୍ଦ୍ର ସଦା ହୃଦୟ କନ୍ଦରରେ ପ୍ରକାଶିତ ହୁଅନ୍ତୁ ।

**ନିରବଧି ଗଳଦଶ୍ରୁଃ ସ୍ୱେଦଯୁକ୍ତଃ ସକମ୍ପଃ**
**ପୁଲକବଳିତ ଦେହଃ ସର୍ବଲାବଣ୍ୟ ଗେହଃ ।**

**ମନସିଜ ଶତଚିତ୍ତ-କ୍ଷୋଭକାରୀ ଯଶସ୍ୱୀ**
**ସ୍ଫୁରତୁ ହୃଦୟ ମଧ୍ୟେ ଗୈ୍ୟରଚନ୍ଦ୍ରୋ ନଟେନ୍ଦ୍ରଃ ।୫୬।**

ଯାହାର ନୟନ ଯୁଗଳରୁ ନିରବଧି ଅଶ୍ରୁଧାରା ପ୍ରବାହିତ, ଯାହାର ଶ୍ରୀଅଙ୍ଗ ସ୍ୱେଦଯୁକ୍ତ କମ୍ପ ପୁଲକାବଳିଦ୍ୱାରା ପରିପୂର୍ଣ୍ଣ ହୋଇ ମଧ୍ୟ ସମସ୍ତ ଲାବଣ୍ୟର ବିଶ୍ରାମସ୍ଥଳ । ଶତ ଶତ କନ୍ଦର୍ପମାନଙ୍କର ଚିତ୍ତ କ୍ଷୋଭକାରୀ, ଯଶସ୍ୱୀ ଗୈ୍ୟରଚନ୍ଦ୍ର ନଟେନ୍ଦ୍ର ସଦା ସର୍ବଦା ହୃଦୟ କନ୍ଦରରେ ପ୍ରକାଶିତ ହୁଅନ୍ତୁ ।

**ଶମନ ଦମନ ନାମ କୃଷ୍ଣନାମ ପ୍ରଦାନଃ**
**ପରମ ପତିତ ଦୀନତ୍ରାଣ କାରୁଣ୍ୟସୀମାଃ ।**
**ବ୍ରଜବିପିନ ରହସ୍ୟ ପ୍ରୋଲ୍ଲସଚ୍ଚାରୁ ଗାତ୍ରଂ**
**ସ୍ଫୁରତୁ ହୃଦୟ ମଧ୍ୟେ ଗୈ୍ୟର ଚନ୍ଦ୍ରୋ ନଟେନ୍ଦ୍ରଃ ।୫୭।**

ଶ୍ରୀ ଶ୍ରୀ ଗୈ୍ୟରଚନ୍ଦ୍ର କଳିହତ ଜୀବମାନଙ୍କୁ ଶମନ ଦମନକାରୀ କୃଷ୍ଣନାମ ପ୍ରଦାନକର୍ତ୍ତା, କପରି ଶମନ ଦମନକର୍ତ୍ତା ପ୍ରଶ୍ନର ଉତ୍ତରରେ ଭାଗବତର ଅଜାମିଳ ପ୍ରସଙ୍ଗରେ, ଯମ ନିଜ ଦୂତମାନଙ୍କ ପ୍ରତି କହୁଛନ୍ତି "ଜିହ୍ୱାନବକ୍ତି ଭଗବଦ୍ ଗୁଣ ନାମଧେୟଂ ତାନ୍ ଆନୟଧ୍ୱ" ଇତି । ପତିତପାବନ, ଦୀନଜନଙ୍କର ତ୍ରାଣକାରୀ ଏବଂ ପରମକାରୁଣ୍ୟର ସୀମା । ବ୍ରଜବିପିନବିହାରୀଙ୍କର ଲୀଳା ରହସ୍ୟସ୍ଫୁର୍ତ୍ତିରେ ଯାହାର ଶରୀର ପ୍ରକୃଷ୍ଟ ଉଲ୍ଲସିତ । ଅଥବା ଯାହାର ଶ୍ରୀଅଙ୍ଗ ବୃନ୍ଦାବନ ରହସ୍ୟ ସ୍ମରଣ କରାଇଦେଉଛି ଏବଂ ତଜ୍ଜନିତ ପ୍ରେମରେ ଦର୍ଶକଙ୍କୁ ଉତ୍ଫୁଲ୍ଲ କରାଉଛି । ସେହି ନଟେନ୍ଦ୍ର ଗୈ୍ୟରଚନ୍ଦ୍ର ସଦା ହୃଦୟ କନ୍ଦରରେ ସ୍ଫୁରିତ ହୁଅନ୍ତୁ ।

**ସକଳରସ ବିଦଗ୍ଧଃ କୃଷ୍ଣନାମ ପ୍ରମୋଦଃ**
**ପ୍ରମୋଦ ଗୁଣଗଭୀରଃ ପ୍ରାଣି ନିସ୍ତାର ଧୀରଃ ।**
**ନିରୂପମ ତନୁରୂପଃ ଦ୍ୟୋତିତାନଙ୍ଗ ଭୂପଃ**
**ସ୍ଫୁରତୁ ହୃଦୟ ମଧ୍ୟେ ଗୈ୍ୟରଚନ୍ଦ୍ରୋ ନଟେନ୍ଦ୍ରଃ ।୫୮।**

ଶ୍ରୀ ଗୌୖରଚନ୍ଦ୍ର ରସିକେନ୍ଦ୍ର ଚୁଡାମଣି- ସକଳରସବିଦଗ୍ଧସାର । ସେ କୃଷ୍ଣନାମରେ ପ୍ରମତ୍ତ, ତାଙ୍କର ପ୍ରବଳ ଗୁଣରାଶି ସାଗରତୁଲ୍ୟ ଗଭୀର, ଲୋକନିସ୍ତାର ହେତୁ ଅତିଶୟ ଯତ୍ନବାନ୍ । ତାଙ୍କର ଅପରୂପ ତନୁଶୋଭା ଯାହାଦ୍ୱାରା ଅନଙ୍ଗରାଜ ଦୀପ୍ତିମାନ୍ ହୋଇଛନ୍ତି, ସେହି ଗୌୖରଚନ୍ଦ୍ର ନଟେନ୍ଦ୍ର ହୃଦୟକନ୍ଦରରେ ପ୍ରକାଶିତ ହୁଅନ୍ତୁ ।

**ବିମଳ କମଳ ବକ୍ତ୍ରଃ ପକ୍ୱବିମ୍ବାଧରୋଷ୍ଠ-**
**ସ୍ତିଳକୁସୁମସୁନାସଃ କମ୍ବୁକଣ୍ଠ ସୁଦୀର୍ଘ ।**
**ସୁବଳିତ ଭୁଜଦଣ୍ଡୋ ନାଭି ଗମ୍ଭୀର ରୂପଃ**
**ସ୍ଫୁରତୁ ହୃଦୟ ମଧ୍ୟେ ଗୌୖରଚନ୍ଦ୍ର ନଟେନ୍ଦ୍ରଃ ।୫୯ ।**

ଯାହାର ବିମଳ ବଦନ ବିକଚ କମଳ ସଦୃଶ । ଅଧରୋଷ୍ଠ ସୁନ୍ଦର ପକ୍ୱ ବିମ୍ବଫଳ ସଦୃଶ ରକ୍ତବର୍ଣ୍ଣ, ନାସିକା ତିଳ ପୁଷ୍ପର ଶୋଭାକୁ ନିନ୍ଦା କରୁଛି, କଣ୍ଠ ଶଙ୍ଖର କଣ୍ଠ ଶୋଭା ଭଳି । ଭୁଜଦ୍ୱୟ ସୁଦୀର୍ଘ ଓ ସୁବଳିତ ସୁନ୍ଦର, ନାଭି ସୁଗଭୀର । ଏହିଭଳି ରୂପବାନ୍ ଗୌୖରଚନ୍ଦ୍ର ନଟେନ୍ଦ୍ରଃ ହୃଦୟ ଗହ୍ୱରରେ ସ୍ଫୁରିତ ହୁଅନ୍ତୁ ।

**କଷିତ କନକକାନ୍ତେଃ ସାରଲାବଣ୍ୟ ମୂର୍ତ୍ତିଃ**
**କଳିକଲୁଷ ବିହନ୍ତା ଯସ୍ୟ କୀର୍ତ୍ତିବରିଷ୍ଠା ।**
**ଅଖିଳ ଭୁବନଲୋକେ ପ୍ରେମଭକ୍ତି ପ୍ରଦାତା**
**ସ୍ଫୁରତୁ ହୃଦୟ ମଧ୍ୟେ ଗୌୖରଚନ୍ଦ୍ରୋ ନଟେନ୍ଦ୍ରଃ ।୬୦ ।**

ଯାହାର ଅଙ୍ଗକାନ୍ତି କଷିତ କାଞ୍ଚନ ତୁଲ୍ୟ, ରୂପ-ମୂର୍ତ୍ତିମନ୍ତ ଲବଣ୍ୟସାର । ଯାହାର ମହୀୟାନ୍ କୀର୍ତ୍ତି କଳିକଲୁଷ ନାଶ କରେ । ଅଖିଳଭୁବନର ଲୋକମାନଙ୍କୁ ଅବିଚାରେ ପ୍ରେମଭକ୍ତି ପ୍ରଦାନକରନ୍ତି, ସେହି ଗୌୖରଚନ୍ଦ୍ର ନଟେନ୍ଦ୍ର ହୃଦୟ ଗହ୍ୱରରେ ସ୍ଫୁରିତ ହୁଅନ୍ତୁ ।

ବହୁବିଧ ମଣିମାଲା ବଦ୍ଧକେଶୋ ବିଚିତ୍ରୋ

ମଳୟଜତିଳକୋଦ୍ୟଭାଲ ଦେଶୋଽଲକାଳିଃ ।

ଶ୍ରବଣ ଯୁଗଲଲୋଲତ୍ କୁଣ୍ଡଳୋହାର ବକ୍ଷାଃ

ସ୍ଫୁରତୁ ହୃଦୟ ମଧ୍ୟେ ଗୌରଚନ୍ଦ୍ରୋ ନଟେନ୍ଦ୍ରଃ ।୬୧।

ଯାହାର ବିଚିତ୍ର କେଶକଳାପ ନାନାବିଧ ମଣିମାଳାଦ୍ୱାରା ବେଷ୍ଟିତ, ଉଜ୍ଜ୍ୱଳ ଭାଲଦେଶରେ ମଳୟଜ ଚନ୍ଦନର ତିଳକ ଏବଂ ସୁନ୍ଦର ଅଳକା ବଳି ଶୋଭାୟମାନ ହୋଇଥାଏ । ଶ୍ରବଣ ଯୁଗଳରେ କୁଣ୍ଡଳ ଦୋଦୁଲ୍ୟମାନ ଏବଂ ବିସ୍ତୀର୍ଣ୍ଣବକ୍ଷ ସ୍ଥଳରେ ମଣିମୁକ୍ତାର ହାର ଶୋଭାୟମାନ, ସେହି ଗୌରଚନ୍ଦ୍ର ନଟେନ୍ଦ୍ର ହୃଦୟ ଗହ୍ୱରରେ ସ୍ଫୁରିତ ହୁଅନ୍ତୁ ।

ଯଦବଧି ହରିନାମ ପ୍ରାଦୁରାସୀତ୍ ପୃଥିବ୍ୟାଂ

ତଦବଧି ଖଲୁ ଲୋକା ବୈଷ୍ଣବା ସର୍ବତ୍ରତେ ।

ତିଳକ ବିମଳମାଳା ନାମଯୁକ୍ତା ପବିତ୍ରା

ହରି ହରି କଳି ମଧ୍ୟେ ଏବମେବଂଭୂବ ।୬୨।

ଯେଉଁ ଦିନଠାରୁ ଏହି ପୃଥିବୀମଣ୍ଡଳରେ ହରିନାମ ପ୍ରାଦୁର୍ଭୂତ ହୋଇଛନ୍ତି, ସେହି ଦିନଠାରୁ ସର୍ବତ୍ର ଲୋକେ ନିଶ୍ଚିତରୂପେ ବୈଷ୍ଣବ ହୋଇଛନ୍ତି । ତିଳକ ଏବଂ ହରିନାମର ସୁନ୍ଦର ତୁଳସୀମାଳା ଧାରଣ କରୁଛନ୍ତି ଓ ହରିନାମଯୁକ୍ତ ହୋଇ ପବିତ୍ର ହୋଇଛନ୍ତି । ହରି ! ହରି ! କଳିଯୁଗରେ ଏହିରୂପ ଆଶ୍ଚର୍ଯ୍ୟ ପରିବର୍ତ୍ତନ ସଦାସର୍ବଦା ହେଉଥାଇ ।

ଜୀବେ ପୂର୍ଣ୍ଣଦୟା ଯତଃ କରୁଣୟା ହା ହା ରବୈପ୍ରାର୍ଥନାଂ

ହେ ହେ କୃଷ୍ଣ କୃପାନିଧେ ! ଭବ ମହାଦାବାଗ୍ନିଦଗ୍ଧାନ୍ ଜନାନ୍ ।

ତ୍ରାହି ତ୍ରାହି ମହାପ୍ରଭୋ ! ସ୍ୱ କୃପୟା ଭକ୍ତିଂ ନିଜାଂ ଦେହ୍ୟମ୍

ମୈବଂ ଗୌରହରେଃ ସଦା ପ୍ରକୁରୁତେ ଦୀନୈକ ନାଥଃ ପ୍ରଭୋଃ ।୬୩।

ଶ୍ରୀ ଶ୍ରୀ ଗୌରଚନ୍ଦ୍ର କଳିହତ ଜୀବମାନଙ୍କ ପ୍ରତି ପୂର୍ଣ୍ଣ ପ୍ରକାଶ କରିଛନ୍ତି - ଯେହେତୁ ସେ କରୁଣାକରି ପରମ ଆର୍ତ୍ତ ସହକାରେ ହା ହା କାର କରି ଏଇ ପ୍ରାର୍ଥନା କରୁଛନ୍ତି - ହେ କରୁଣାସିନ୍ଧୁ ଶ୍ରୀକୃଷ୍ଣ ! ଏଇ ଭବଦାବାନଳରେ ଦଗ୍ଧ ଜୀବମାନଙ୍କୁ ରକ୍ଷା କର ! କୃପାକରି ସେମାନଙ୍କୁ ନିଜର ଗୁପ୍ତଧନ (ମୁକ୍ତିଂ ଦଦାତି କର୍ହିଚିତ୍ସ୍ମ ନଚଭକ୍ତିଯୋଗଃ) ପ୍ରେମଭକ୍ତି ପ୍ରଦାନ କରି ତ୍ରାଣକର ।

**ବିଷନ୍ନ ଚିତ୍ତାନ୍ କଳିପାପ ଭୀତାନ୍**
**ସଂବିକ୍ଷ ଗୌରୋ ହରିନାମ ମନ୍ତ୍ରମ୍ ।**
**ସ୍ୱୟଂ ଦଦୌ ଭକ୍ତଜନାନ୍ ସମାଦିଶେତ୍**
**କୁରୁଷ୍ୱ ସଂକୀର୍ତ୍ତନନୃତ୍ୟ ବାଦ୍ୟାନ୍ ।୬୪।**

କଳିପାପେ ଭିତତ୍ରସ୍ତ ବିଷର୍ଣ୍ଣ ଚିତ୍ତ ଜୀବମାନଙ୍କୁ ଦେଖି ଶ୍ରୀ ଶ୍ରୀ ଗୌରଚନ୍ଦ୍ର ସ୍ୱୟଂ ହରିନାମ ମନ୍ତ୍ର ପ୍ରଦାନ କରିଛନ୍ତି ଏବଂ ଭକ୍ତଗଣଙ୍କୁ ନୃତ୍ୟ ବାଦ୍ୟ ସହିତ ସଂକୀର୍ତ୍ତନ କରିବାପାଇଁ ସମ୍ୟକ୍ ରୂପେ ଆଦେଶ କରିଛନ୍ତି ।

**ହରେମୂର୍ତ୍ତିଂ ସୁରୂପାଙ୍ଗୀଂ ତ୍ରିଭଙ୍ଗ ମଧୁରାକୃତିଂ ।**
**ଇତି ଗୌରୋ ବଦେଭକ୍ତାନ୍ ସ୍ଥାପୟସ୍ୱ ଗୃହେ ଗୃହେ ।୬୫।**

ଶ୍ରୀ ଶ୍ରୀ ଗୌରଚନ୍ଦ୍ର ସ୍ୱଭକ୍ତବୃନ୍ଦଙ୍କୁ ଉପଦେଶ କରନ୍ତି ଯେ - ତ୍ରିଭଙ୍ଗଭଙ୍ଗିମ ସୁନ୍ଦର ମଧୁରାକୃତି ହରିଙ୍କର ଶ୍ରୀକୃଷ୍ଣବିଗ୍ରହ ଘରେ ଘରେ ସ୍ଥାପନ କରି ଅର୍ଚ୍ଚନ କର ।

**ସୁଶୋଣପଦ୍ମପତ୍ରାକ୍ଷଃ ସୁବିମ୍ବାଧର ପଲ୍ଲବୈଃ**
**ସୁନାସା ପୁଟ ଲାଳିତ୍ୟ ଗୌରଚନ୍ଦ୍ରଂ ନମସ୍ତୁତେ ।୬୬।**

ଯାହାର ନୟନଯୁଗଳ ପ୍ରସ୍ଫୁଟିତ ରକ୍ତପଦ୍ମ ସଦୃଶ, ଅଧରପଲ୍ଲବ ପକ୍ୱବିମ୍ବ ଫଳ ସଦୃଶ ସୁନ୍ଦର ନାସାପୁଟ ଗରୁଡ଼ ଚଞ୍ଚୁକୁ ନିନ୍ଦା କରେ । ଏହିଭଳି ସମସ୍ତ ମାଧୁର୍ଯ୍ୟର ଖଣି ଗୌରସୁନ୍ଦରଙ୍କୁ ନମସ୍କାର କରୁଅଛି ।

**କନ୍ଦର୍ପ କୋଟିଲାବଣ୍ୟ କୋଟି ଚନ୍ଦ୍ରାନନ ତ୍ୱିଷେ ।**
**କୋଟିକାଞ୍ଚନ ପୁଷ୍ପାଭ ଗୌରଚନ୍ଦ୍ରୋ ନମସ୍ତୁତେ ।୬୭।**

କୋଟି କନ୍ଦର୍ପ କୁ ନିନ୍ଦା କରେ ଯାହାର ଲାବଣ୍ୟ, ଯାହାର ବଦନ କାନ୍ତି କୋଟି ଚନ୍ଦ୍ରର କାନ୍ତିକୁ ନିନ୍ଦାକରେ ଏବଂ କୋଟି କୋଟି ରକ୍ତ କାଞ୍ଚନ ପୁଷ୍ପର ଆଭାକୁ ନିନ୍ଦା କରେ ଯାହାର ଆଭା, ସେହି ଗୌରଚନ୍ଦ୍ରଙ୍କୁ ମୁଁ ନମସ୍କାର କରୁଅଛି ।

**ସମୁକ୍ତା ଦନ୍ତପଙ୍କ୍ୟାଭୋ ହାସ୍ୟଶୋଭା ଶୁଭାକରମ୍ ।**
**ସିଂହଗ୍ରୀବ ଲସତ୍‌କଣ୍ଠ ଗୌରଚନ୍ଦ୍ର ନମସ୍ତୁତେ ।୬୮।**

ଯାହାର ଦନ୍ତପଂକ୍ତିର ଶୋଭା ମୁକ୍ତାମାଳାସଦୃଶ, ହାସ୍ୟ ଶୋଭା ସମସ୍ତ ମଙ୍ଗଳର ଖଣି । ସିଂହ ଗ୍ରୀବ ଏବଂ ସୁଶୋଭିତ କଣ୍ଠ, ସେହି ଗୌରଚନ୍ଦ୍ରଙ୍କୁ ମୁଁ ନମସ୍କାର କରୁଅଛି ।

**ମଲ୍ଲିମାଲୋଲ୍ଲସଦ୍‌ବକ୍ଷାଃ କର୍ଣ୍ଣାଲମ୍ବିତ ମୌକ୍ତିକଃ ।**
**କଙ୍କଣାଙ୍ଗଦସଂଯୁକ୍ତ ମହାଭୁଜ ନମସ୍ତୁତେ ।୬୯।**

ଯାହାର ବିସ୍ତୀର୍ଣ୍ଣ ବକ୍ଷସ୍ଥଳରେ ମଲ୍ଲିକାର ମାଳା ଦୋଦୁଲ୍ୟମାନ, କର୍ଣ୍ଣଦ୍ୱୟରେ ସୁନ୍ଦର ମୁକ୍ତାଫଳ ଲମ୍ବମାନ, ମହାନ୍ ଭୁଜଦ୍ୱୟରେ କଙ୍କଣଅଙ୍ଗଦସଂଯୁକ୍ତ ସେହି ଗୌରଚନ୍ଦ୍ରଙ୍କୁ ନମସ୍କାର କରୁଅଛି ।

**ମୃଗେନ୍ଦ୍ର ମଧ୍ୟକଙ୍କାଳ ଜାନୁରମ୍ଭାତି ସୁନ୍ଦର**
**କୂର୍ମପୃଷ୍ଠ ପଦଦ୍ୱନ୍ଦ୍ୱ ଗୌରଚନ୍ଦ୍ର ନମସ୍ତୁତେ ।୭୦।**

ଯାହାର କଟି ସିଂହକଟିକୁ ନିନ୍ଦା କରେ, ଜାନୁଦ୍ୱୟ ରମ୍ଭାବୃକ୍ଷଭଳି ସୁନ୍ଦର ଏବଂ ପଦଦ୍ୱନ୍ଦ୍ୱ କୂର୍ମ ପୃଷ୍ଠଭଳି ପୃଥୁଳ । ସେହି ସୁନ୍ଦରାତି ସୁନ୍ଦର ଗୌରଚନ୍ଦ୍ରଙ୍କୁ ନମସ୍କାର କରୁଅଛି ।

**ଆଶ୍ରୟେ ତବ ପାଦାବ୍ଜଂ କଳିକା ଚମ୍ପକାଙ୍ଗୁଳମ୍ ।**
**କୃପାଂ କୁରୁ ଦୟାନାଥ ଗୌରଚନ୍ଦ୍ର ନମସ୍ତୁତେ ।୭୧।**

ସ୍ୱର୍ଣ୍ଣ ଚମ୍ପକ କଳିକା ସଦୃଶ ଅଙ୍ଗୁଳିଯୁକ୍ତ ଆପଣଙ୍କର ଚରଣ କମଳକୁ ଆଶ୍ରୟ କରୁଛି, ହେ ଦୟାନାଥ କୃପା କରନ୍ତୁ, ହେ ଗୌରଚନ୍ଦ୍ର ମୁଁ ଆପଣଙ୍କୁ ପ୍ରଣାମ କରୁଅଛି ।

**ନଖପଂକ୍ତିଂ ଜିତାନେକ ମାଣିକ୍ୟ ମୁକୁରଦ୍ୟୁତେ ।**

**ଚରଣେ ଶରଣଂ ଯାଚେ ଗୌରଚନ୍ଦ୍ର ନମସ୍ତୁତେ ।୭୨।**

ହେ ଗୌରଚନ୍ଦ୍ର ! ଆପଣଙ୍କର ଚରଣର ନଖପଂକ୍ତି ଅନେକ ମାଣିକ୍ୟ ମୁକୁରର ଦ୍ୟୁତିକୁ ଲଜ୍ଜିତ କରିଦେଉଛି, ସେହି ଚରଣକମଳରେ ମୁଁ ଶରଣ କାମନା କରୁଅଛି । ଆପଣଙ୍କ ଚରଣରେ କୋଟି ନମସ୍କାର ।

**ଧ୍ୱଜବଜ୍ରାଙ୍କିତେ ପାଦପଦ୍ମେଽହଂ ଶରଣଂ ଗତ ।**

**କରିଷ୍ୟତି ଯମଃ କିଂମେ ଗୌରଚନ୍ଦ୍ର ନମସ୍ତୁତେ ।୭୩।**

ହେ ଗୌରଚନ୍ଦ୍ର ! ଆପଣଙ୍କର ଧ୍ୱଜବଜ୍ରାଙ୍କିତ ପାଦପଦ୍ମରେ ମୁଁ ଶରଣାଗତ ହୋଇଛି । ଯମ ମୋର କ'ଣ କରିବ ? ବର୍ତ୍ତମାନ ମୋର ଯମ ଭୟ ଆଉ ନାହିଁ । କାହିଁକି ଭୟ ନାହିଁ? ଯଦି ପଚାରନ୍ତି ତେବେ, ଶୁଣନ୍ତୁ ଭାଗବତ ୬/୩/୩୪ ଶ୍ଳୋକରେ ଯମଙ୍କଠାରୁ ଅଦେଶପାଇଁ ଯମ ଦୂତମାନେ ଅଚ୍ୟୁତାଶ୍ରୟଂ ଜନମାନଙ୍କୁ ଦର୍ଶନ ପାଇଁ ମଧ ଭୟଭୀତ ହୋଇଥିଲେ ଆପଣଙ୍କର ଅଭୟ ଚରଣରେ ନମସ୍କାର ।

**ଶତ ଶତ ପତିତାନାଂ ତ୍ରାଣକର୍ତ୍ତା ପ୍ରଭୁସ୍ତ୍ୱଂ**
**କଥମପି କିମୁଦୋଷେ ବଞ୍ଚିତୋଽହଂ ପ୍ରପନ୍ନଃ ।**
**କଳିଭୟ କୃତଭୀତଂ ତ୍ରାହିମାଂ ଦୀନବନ୍ଧୋ**
**ଶରଣାଗତଗତିସ୍ତ୍ୱଂ କିଂ ବ୍ରୁବେ ଗୌର ଚନ୍ଦ୍ର ।୭୪।**

ହେ ମହାପ୍ରଭୋ ! ଆପଣ ଶତ ଶତ ପତିତମାନଙ୍କର ତ୍ରାଣକର୍ତ୍ତା, କିନ୍ତୁ କେଉଁ ଦୋଷହେତୁ କାହିଁକି ମୁଁ ପ୍ରପନ୍ନ ହୋଇ ମଧ ଆପଣଙ୍କ କୃପାରୁ ବଞ୍ଚିତ । ହେ ଦୀନବନ୍ଧୋ ! ହେ ଗୌରଚନ୍ଦ୍ର ! କଳିଭୟରେ ତ୍ରସ୍ତ ମୋତେ

ପରିତ୍ରାଣ କର, ଆଉ ଅଧିକ କ'ଣ କହିବି ? ଆପଣ ଶରଣାଗତର ଏକମାତ୍ର ଗତି ।

**କିମଦ୍ଭୁତଂ ଗୌରହରେଶ୍ଚରିତ୍ରଂ**
**ନମୋପଦେଶାଦ୍ଧରିମଶ୍ରୟନ୍ତି ।**
**ନୃତ୍ୟନ୍ତି ଗାୟନ୍ତି ରଦାନ୍ତି ଲୋକା**
**ରଟନ୍ତି ଅର୍ଥାନ୍ ହରିଭକ୍ତି ଯୁକ୍ତାଃ ।୭୫।**

ଶ୍ରୀ ଗୌରହରିଙ୍କର ଚରିତ୍ର ଅତି ଅଦ୍ଭୁତ ! ଶ୍ରୀ ଭଗବାନ୍ନାମ ଉପଦେଶ ଦ୍ୱାରା ଜଗଜ୍ଜୀବଙ୍କୁ ହି ଭଜନପାରାୟଣ କରୁଅଛନ୍ତି । ସେହି ହରିଭକ୍ତି ପ୍ରଭାବରେ ଲୋକମାନେ ପ୍ରେମରେ ନୃତ୍ୟ କରୁଛନ୍ତି, ଗାନ କରୁଛନ୍ତି ଅଶ୍ରୁପାତ କରୁଛନ୍ତି ଏବଂ ହରିଭକ୍ତି କଥା (ଭାଗବତକଥା) ବ୍ୟାଖ୍ୟା କରୁଛନ୍ତି ।

**ନିରନ୍ତର କୃଷ୍ଣକଥା ପରସ୍ପରଂ**
**ସୁଭକ୍ତିଦଂ ନାମ ହରେର୍ବଦନ୍ତି ବୈ ।**
**ଜଳ୍ପନ୍ତି ଲୋକା ଭୁବିଭାବବିହ୍ୱଳା**
**ଗୌରେଽବତୀର୍ଣ୍ଣେ କଳିପାପନାଶକେ ।୭୬।**

କଳିହତ ଜୀବମାନଙ୍କର ପାପ ତାପ ନାଶ କାରୀ କଳିପାବନ ଗୌରହରି ଅବତୀର୍ଣ୍ଣ ହେଲେ ଲୋକମାନେ – ସୁଭକ୍ତିପ୍ରଦ ହରିନାମ କୀର୍ତ୍ତନ କରନ୍ତି ଏବଂ ଭାବବିହ୍ୱଳ ହୋଇ ପରସ୍ପର ଭାଗବତ ଲୀଳାକଥା ଆଲୋଚନା କରୁଅଛନ୍ତି ।

**ସତ୍ୟତ୍ରେତା ଦ୍ୱାପରେଷୁ ଯଜ୍ଞଧ୍ୟାନତପ ବ୍ରତୈଃ ।**
**କେଷାଂ କେଷାଂ ଫଳଂ ଜାତଂ ଶୁଭକର୍ମ ବିଧାନତଃ ।୭୭।**

ସତ୍ୟ, ତ୍ରେତା, ଦ୍ୱାପରଯୁଗମାନଙ୍କରେ ଯଜ୍ଞ, ଧ୍ୟାନ ଓ ତପ ଆଦି ବ୍ରତଦ୍ୱାରା କୌଣସି କୌଣସି ବ୍ୟକ୍ତି ହିଁ ଶୁଦ୍ଧ ଧର୍ମ ବିଧାନ ପାଳନ କରିପାରିଛନ୍ତି, କିଛି କିଛି ଫଳ ମଧ୍ୟ ଲାଭ କରିଛନ୍ତି ।

**କଲୌ ଶ୍ରୀ ଗୌରକୃପୟା ନାମ ମାତ୍ରେଣ ଜଳ୍ପକା**
**କୃଷ୍ଣସାନ୍ନିଧ୍ୟସଂପ୍ରାପ୍ତାଃ ପ୍ରେମଭକ୍ତିପରାୟଣାଃ ।୭୮।**

କିନ୍ତୁ କଳିଯୁଗର ଲୋକମାନେ ଶ୍ରୀ ଗୌରହରିଙ୍କ କୃପାରୁ କେବଳ ଶ୍ରୀଭଗବନ୍ନାମ ମାତ୍ର ଗାନ କରି ପ୍ରେମଭକ୍ତି ପରାୟଣହୋଇ କୃଷ୍ଣ ସାନ୍ନିଧ ପ୍ରାପ୍ତ ହେଉଛନ୍ତି ।

**ଅନୁବ୍ରହ୍ମାଣ୍ଡୟୋର୍ମଧ୍ୟେ-ଚୈତନ୍ୟେନ ସମାହୃତମ୍ ।**
**ହରେକୃଷ୍ଣ ରାମନାମ-ମାଳାଂ ଭକ୍ତି ପ୍ରଦାୟିନମ୍ ।୭୯।**

ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁ ବ୍ରହ୍ମାଣ୍ଡସ୍ଥ ସକଳ ଲୋକଙ୍କୁ ସମାହୃତ କରି, ସମସ୍ତଙ୍କ ଗଳାରେ ଭକ୍ତି ପ୍ରଦାୟିନୀ ହରେକୃଷ୍ଣ ରାମ ଆଦି ନାମ ମାଳା ପ୍ରଦାନ କରି ସମସ୍ତ ସନ୍ତାପ ହରଣ କରିଛନ୍ତି ।

**ଜଳ୍ପନ୍ତି ହରିନାମାନି ଚୈତନ୍ୟଜ୍ଞାନରୂପତଃ ।**
**ଭଜନ୍ତି ବୈଷ୍ଣବାନ୍ ଯେତୁ ତେ ଗଚ୍ଛନ୍ତି ହରେଃ ପଦମ୍ ।୮୦।**

ଯେଉଁମାନେ ତତ୍ତ୍ୱତଃ ଶ୍ରୀମନ୍ମହାପ୍ରଭୁଙ୍କର ତତ୍ତ୍ୱ ଜ୍ଞାତ ହୋଇ ହରିନାମ ଗାନ କରନ୍ତି ଏବଂ ତତ୍ କୃପାସିକ୍ତ ବୈଷ୍ଣବଗଣଙ୍କର ଭଜନା କରନ୍ତି, ସେହିମାନେ ହିଁ ଶ୍ରୀ ହରିପାଦପଦ୍ମ ଲାଭ କରନ୍ତି ।

**ଶୃଣ୍ୱନ୍ତି ଯେ ବୈ ଗୁରୁତତ୍ତ୍ୱ ଗାଥାଂ**
**ଗାୟନ୍ତି ଯତ୍ନୈର୍ହରିନାମ ମନ୍ତ୍ରମ୍ ।**
**ପୂଜନ୍ତି ସାଧୁ ଗୁରୁ ଦେବତାଞ୍ଚ**
**ଚୈତନ୍ୟଭକ୍ତାଃ କଳିକାଳ ମଧ୍ୟେ ।୮୧।**

ଏହି କଳିଯୁଗରେ ଯେଉଁମାନେ ଗୁରୁତତ୍ତ୍ୱ ଗାଥା ଶ୍ରବଣ କରନ୍ତି, ଯତ୍ନବାନ ହୋଇ ହରିନାମ ମନ୍ତ୍ର ଗାନ କରନ୍ତି ଏବଂ ସାଧୁ, ଗୁରୁ ଓ ଦେବତାଙ୍କର ସମ୍ୟକ୍ ପୂଜା କରନ୍ତି, ସେହିମାନେ ହିଁ କଳିଯୁଗରେ ଚୈତନ୍ୟ ମହାପ୍ରଭୁଙ୍କର ଭକ୍ତ ଅଟନ୍ତି ।

କୃଷ୍ଣ ଚୈତନ୍ୟଦେବେନ ହରିନାମ ପ୍ରକାଶିତମ୍ ।
ୟେନ କେନାପି ତତ୍ ପ୍ରାପ୍ତଂ ଧନ୍ୟୋଽସୈ୍ୟ ଲୋକପାବନଃ ।୮୨।

ଶ୍ରୀକୃଷ୍ଣଚୈତନ୍ୟଦେବଙ୍କଦ୍ୱାରା ହରିନାମ ପ୍ରକାଶିତ ହୋଇଛନ୍ତି । ଯେକୌଣସି ବ୍ୟକ୍ତି ତାହା ପ୍ରାପ୍ତ ହୋଇଛନ୍ତି ସେମାନେ ଧନ୍ୟ ଏବଂ ଏହି ଲୋକରେ ସେମାନେ ଗୁରୁ ହୋଇ ଲୋକପାବନ ହୋଇପାରିଛନ୍ତି ।

ଯଦି ସ୍ୟାତ୍ ବୈଷ୍ଣବେ ପ୍ରୀତିଃ ସଦା କୀର୍ତ୍ତକ ଲମ୍ପଟଃ ।
ଗୈ୍ୟରାଙ୍ଗଚନ୍ଦ୍ର ବିମୁଖଃ ନବୈଭାଗବତୋପି ସଃ ।୮୩।

ଯଦି ବୈଷ୍ଣବଙ୍କଠାରେ ପ୍ରୀତି ଅଛି ଏବଂ ସଦାସର୍ବଦା କୀର୍ତ୍ତନରତ ରହନ୍ତି ସେହିମାନେ ହିଁ ଭାଗବତ ବୋଲି କୁହାହୋଇଥାନ୍ତି । ସେମାନଙ୍କ ପ୍ରତି ଶ୍ରୀ ଗୈ୍ୟରଚନ୍ଦ୍ର ମହାପ୍ରଭୁ କୌଣସି ସମୟରେ ବିମୁଖ ହୁଅନ୍ତି ନାହିଁ ।

ଅନନ୍ୟଚେତା ହରିମୂର୍ତ୍ତି ସେବାଂ
କରୋତି ନିତ୍ୟଂ ଯଦି ଧର୍ମନିଷ୍ଠଃ ।
ତଥାପି ଧନ୍ୟୋ ନହିତତ୍ତ୍ୱବେତ୍ତା
ଗୈ୍ୟରାଙ୍ଗଚନ୍ଦ୍ରେ ବିମୁଖ ଯଦି ସ୍ୟାତ୍ ।୮୪।

ଯଦି ଅନନ୍ୟଚେତା ସ୍ୱଧର୍ମନିଷ୍ଠ ହୋଇ ନିତ୍ୟ ଶ୍ରୀହରିଙ୍କର ଆର୍ଚ୍ଚା ମୂର୍ତ୍ତିଙ୍କର ସେବା ପୂଜାଦି କରେ, ତଥାପି ଯଦି ଶ୍ରୀ ଗୈ୍ୟରଚନ୍ଦ୍ରଙ୍କର ବିମୁଖ ହୁଏ, ସେହି ବ୍ୟକ୍ତି ଧନ୍ୟ ଓ ତତ୍ତ୍ୱବେତ୍ତା ବୋଲି ଗଣ୍ୟ ହୋଇପାରିବ ନାହିଁ ।

କିମ୍ପୁ ସୁଖମୁପଭୋକ୍ତୁଂ ବାଞ୍ଛୟେଦ୍‌ବଞ୍ଚିତୋଽସୈ୍ୟ,
ସକଳ ନିଗମସିଦ୍ଧଂ ଗୈ୍ୟରଚନ୍ଦ୍ରଂ ନ ବେତ୍ତି ।
ହରି ହରି ମେତତ୍ କୁତ୍ର ଯାତଂ ଚରିତ୍ରଂ
ସ ଭବ ଜଳଧିମଧ୍ୟେ କୁମ୍ଭୀପାକେ ପପାତ ।୮୫।

ଯିଏ ସକଳ ନିଗମସିଦ୍ଧ ସର୍ବାବତାରି ଗୌରଚନ୍ଦ୍ରଙ୍କୁ ଜାଣନ୍ତି ନାହିଁ ବା ଜାଣିବାପାଇଁ ଇଚ୍ଛା କରନ୍ତି ନାହିଁ,- ସିଏ କାହିଁକି ପ୍ରାପ୍ତି ପାଇଁ ଇଚ୍ଛା କରିବେ ? ସିଏ ନିଶ୍ଚୟ ସର୍ବତୋଭାବେ ବଞ୍ଚିତ ହୋଇଛି । ହରି ହରି କାହିଁକି ଏଭଳି ହୁଏ ! ଏଭଳି ବୁଦ୍ଧି କିପରି ହେଉଛି । ଅବଶ୍ୟ ସିଏ ଭବଜଳଧି ରୂପକ କୁମ୍ଭୀପାକ ମଧରେ ପଡ଼ିଯାଇଛି ।

**ଶଚୀସୁତ-ପଦାମ୍ବୁଜେ ଶରଣ ମାତ୍ର ମନ୍ୱେଷଣଂ**

**କରୋମି କୁଳଦୈବତେ ପ୍ରବଳ କାତରେ ବୈଷ୍ଣବାଃ ।**

**କୃପାଂ କୁରତ ସର୍ବଦା ମୟି ବିଚିତ୍ର ବାଞ୍ଛାସ୍ପଦଂ**

**ମମ ପ୍ରଣତ ଚେତସୋ ଭବତୁ ସିଦ୍ଧିରବ୍ୟାହତା ।୮୬।**

ମୁଁ ଶଚୀନନ୍ଦନଗୌରହରିଙ୍କର ରାତୁଲ ପାଦପଦ୍ମ ତଳେ ଏକମାତ୍ର ଶରଣ ଅନ୍ୱେଷଣ କରୁଛି । ହେ ମୋର କୁଳଦେବତା ବୈଷ୍ଣବଗଣ ! ମୋଭଳି ପ୍ରବଳକାତର ପ୍ରତି ସର୍ବଦା କୃପା କରି ସେହି ବାଞ୍ଛିତପଦ ପାଇବାପାଇଁ ସମର୍ଥ କର । ଏହିଭଳି ମୋର ପ୍ରଣତ ଚିତ୍ତର ଅବ୍ୟାହତା ସିଦ୍ଧି ପ୍ରାପ୍ତ ହେଉ ।

**ନ ଧନଂଯ ନ ଯଶୋ ନ କୁଳଂ ନ ତପୋ**

**ନଜନଂ ନଶୁଭଂ ନସୁତଂ ନ ସୁଖମ୍ ।**

**ଚରଣେ ଶରଣଂ ତବ ଗୌର ହରେ**

**ମମ ଜନ୍ମନି ଜନ୍ମନି ଦେହି ବରମ୍ ।୮୭।**

ମୁଁ ଧନ, ଜନ, ଯଶ, କୁଳ, ତପ, ସୁଖ, ଶୁଭ ଏବଂ ପୁତ୍ରାଦି ମାଗେ ନାହିଁ । ହେ ଗୌର ହରି ! ଏହି ବର ଦିଅ ଯେପରି ଜନ୍ମେ ଜନ୍ମେ ଆପଣଙ୍କର ଚରଣରେ ଶରଣ ନେଇ ଭଜନ କରିପାରିବି ।

**ନାନା କ୍ଲେଶ ମୟାଯୁକ୍ତଂ ସ୍ମୃତିହୀନଞ୍ଚ ମାଂ ପ୍ରଭୋ ।**

**ଭବଭୀତାଦ୍ ଗୌରଚନ୍ଦ୍ର ତ୍ରାହି ତ୍ରାହି କୃପାନିଧେ ।୮୮।**

ହେ ପ୍ରଭୋ ଗୌରଚନ୍ଦ୍ର ! ମୁଁ ସଂସାରରେ କ୍ଲେଶାକ୍ଲିଷ୍ଟ ହୋଇ ସ୍ମୃତିହୀନ ହୋଇଛି । ହେ କୃପାନିଧେ ! ମୋତେ ଭବଭୟଠାରୁ ଉଦ୍ଧାର କର ।

**ଅନେକ ଜନ୍ମ ଭ୍ରମଣୋ ମନୁଷ୍ୟୋଽହଂ ଭବନ୍ କଲୌ ।**

**ବ୍ୟାକୁଲାତ୍ମା ପଦାବ୍ଜେତେ ଶରଣଂ ରକ୍ଷ ମାଂ ପ୍ରଭୋ ।୮୯।**

ମୁଁ ଅନେକ ଜନ୍ମ ଭ୍ରମଣ କରି କରି ଏହି କଳିକାଳରେ ଦୁର୍ଲଭ ମନୁଷ୍ୟ ଦେହ ପ୍ରାପ୍ତ ହୋଇଛି । ମୁଁ ଅତି ବ୍ୟାକୁଳାନ୍ତକରଣ ହୋଇ ଶରଣାଗତ ହୋଇଛି, ହେ ପ୍ରଭୋ ! ମୋତେ ରକ୍ଷା କର ।

**କାତରଂ ପତିତଂ ଶୌଚ୍ୟଂ ତ୍ରାହିମାଂ ଶ୍ରୀଶଚୀସୁତ ।**

**ସର୍ବେ ପ୍ରେମସୁଖେମଗ୍ନା ବଞ୍ଚିତଂ ମା କୁରୁ ପ୍ରଭୋ ।୯୦।**

ହେ ଶଚୀନନ୍ଦନ ! ମୁଁ ଅତିକାତର ଏବଂ ଅଧମ ପତିତ ଏବଂ ମୋର ଅବସ୍ଥା ଅତି ଶୋଚନୀୟ । ମୋତେ କୃପାକରି ତ୍ରାଣ କର । ଏହି ଜଗତ୍ ସଂସାରରେ ସମସ୍ତେ ପ୍ରେମସୁଖରେ ମଗ୍ନ ହୋଇଛନ୍ତି । ପ୍ରଭୁ ହେ ! ଏକମାତ୍ର ମୋତେ ବଞ୍ଚିତ କରନ୍ତୁ ନାହିଁ ।

**ସର୍ବେଷାଂ ପାପଯୁକ୍ତାନାଂ ତ୍ରାତୁଂ ଶକ୍ତୋଽନ୍ୟ ଦୈବତଃ ।**

**ମମୋଦ୍ଧାରେ ପ୍ରଭୁର୍ଗୌରୋ ଯତଃ ପତିତପାବନଃ ।୯୧।**

ହେ ପ୍ରଭୋ ! ଅନ୍ୟାନ୍ୟ ଦେବତାଗଣ ଅପର ସମୁଦାୟ ପାପୀମାନଙ୍କର ପାପ ନାଶ କରିବାପାଇଁ ସମର୍ଥ, କିନ୍ତୁ ହେ ଗୌରଚନ୍ଦ୍ର ମୋର ଉଦ୍ଧାର ପାଇଁ ଏକମାତ୍ର ଆପଣ ହିଁ ସମର୍ଥ, ଯେହେତୁ ଆପଣ ପତିତପାବନ ।

**ଶ୍ରୀଗୌରଚରଣ-ଦ୍ୱନ୍ଦ୍ୱେ ଯାଚେ ଯାଚେ ପୁନଃ ପୁନଃ ।**

**ଜୀବନେ ମରଣେ ବାପି ତବରୂପଂ ବିଚିନ୍ତୟେ ।୯୨।**

ଶ୍ରୀ ଗୌରଚନ୍ଦ୍ରଙ୍କର ରାତୁଳ ଚରଣଯୁଗଳରେ ବାରମ୍ବାର ମୋର ଏଇ ମାତ୍ର ପ୍ରାର୍ଥନା, ଯାହାକି ଜୀବନରେ ବା ମରଣରେ ସର୍ବଦା ଆପଣଙ୍କର ଅପରୂପ ରୂପମାଧୁରୀ ଚିନ୍ତା କରିପାରିବି ।

**କୃଷ୍ଣ ତ୍ୱଂ ଦ୍ୱାପରେ ଶ୍ୟାମ କଲୌ ଗୌରାଙ୍ଗବିଗ୍ରହମ୍ ।**

**ଧୃତ୍ୱାଽଶେଷ ଜନାନ୍ ପ୍ରେମଭକ୍ତି ଯଚ୍ଛସି ଲୀଳୟା ।୯୩।**

ହେ କୃଷ୍ଣ ! ତୁମେ ହି ଦ୍ୱାପରରେ ଶ୍ୟାମରୂପ ଧାରଣ କରି ଏହି କଳିଯୁଗରେ ପୁନର୍ବାର ଗୌରାଙ୍ଗମୂର୍ତ୍ତି ଧାରଣ କରିଅଛ ଏବଂ ଏହି ରୂପେ ନାନା ଲୀଳାରଙ୍ଗ ପ୍ରକାଶ କରି ଅଶେଷ ଜନଗଣଙ୍କୁ ପ୍ରେମଭକ୍ତି ପ୍ରଦାନ କରୁଅଛ ।

**ଯଥେପ୍ସିତଂ ଗୌର ପଦାରବିନ୍ଦେ**

**ନିବେଦିତଂ ଦେହ ମନୋବଚୋଭିଃ ।**

**ସର୍ବାର୍ଥସିଦ୍ଧିଂ କୁରୁମେ କୃପାଳୋ**

**ନିରନ୍ତରଂ ତେ ସ୍ମୃତିରସ୍ତୁନିତ୍ୟା ।୯୪।**

ମୋର ମନରେ ଯାହା ଯାହା ଉଦୟ ହେଉଛି ମୁଁ ସେସବୁ ଆପଣଙ୍କର ପାଦପଦ୍ମରେ କାୟମନୋବାକ୍ୟରେ ନିବେଦନ କରୁଅଛି । ହେ କରୁଣାମୟ ! ମୋର ସର୍ବାର୍ଥ ସିଦ୍ଧି କରନ୍ତୁ ଯେଭଳି ନିରନ୍ତର ଆପଣଙ୍କର ନିତ୍ୟସ୍ମୃତି ରହେ ।

**ସ୍ୱତନ୍ତ୍ରସ୍ୟ ପ୍ରଭୋରେବ ଲୀଳାମନୁଜ ବିଗ୍ରହମ୍ ।**

**ଧୃତ୍ୱା ଲୋକ ପରିତ୍ରାଣଂ କୃତବାନ୍ ହରିନାମଭିଃ ।୯୫।**

ହେ ମହାପ୍ରଭୋ ! ଆପଣ ସ୍ୱତନ୍ତ୍ର ଈଶ୍ୱର ଅଟନ୍ତି । ଲୀଳା ମନୁଷ୍ୟ ବିଗ୍ରହ ଧାରଣ କରି ହରିନାମ ଦାନଦ୍ୱାରା ସମସ୍ତ ଲୋକଙ୍କୁ ପରିତ୍ରାଣ କରିଅଛନ୍ତି ।

**ଅନାଥବନ୍ଧୋ କରୁଣୈକ ସିନ୍ଧୋ !**
**ସଂସାରବନ୍ଧାତ୍ କୁରୁମାଂ ବିମୁକ୍ତମ୍ ।**
**ଭ୍ରମାମି ତୀର୍ଥାନ୍ ତବନାମ ଗାନୈ**
**ଦୃଷ୍ଟ୍ୱା ମହାତ୍ମାନ୍ ହରିଦେବ ରୂପାନ୍ ।୯୬।**

ହେ ଅନାଥବନ୍ଧୋ ! ହେ କରୁଣାସିନ୍ଧୋ ! ମୋତେ ସଂସାର ବନ୍ଧନରୁ ଅତିଶୀଘ୍ର ବିମୁକ୍ତ କରନ୍ତୁ । ଆପଣଙ୍କର ପରମ ପବିତ୍ର ନାମ ଗାନକରି ଏବଂ ଆପଣଙ୍କର ଅନୁଗତ ଦେବତୁଲ୍ୟ ସାଧୁମହାତ୍ମା ଗଣଙ୍କୁ ଦର୍ଶନ କରିବା ଉଦ୍ଦେଶ୍ୟରେ ତୀର୍ଥଗୁଡ଼ିକ ପର୍ଯ୍ୟଟନ କରିବି ।

**ଯଦୁକ୍ତଂ ଯତ୍କୃତଂ ପୂର୍ବଂ ଯତ୍ଶ୍ରୁତଂ ଯନ୍ମନୋଗତମ୍ ।**
**ସର୍ବଂ କ୍ଷମସ୍ୱ ହେ ଗୌରେ ତ୍ୱତ୍ସ୍ମୃତିଃ ସ୍ୟାତ୍ ସଦା ମମ ।୯୭।**

ମୁଁ ପୂର୍ବରେ ଯାହା କହିଛି, ଯାହା କରିଛି, ଯାହା ଶୁଣିଛି ଏବଂ ମନେ ମନେ ଭାବିଛି, ହେ ଗୌରଚନ୍ଦ୍ର ! ସେହି ସମସ୍ତ ନିଜ ଗୁଣେ କ୍ଷମାକର ଏବଂ ଏହି ବରଦାନ ଦିଅନ୍ତୁ ସଦାସର୍ବଦା ଆପଣଙ୍କର ସ୍ମୃତି ରହେ, ଏହାହିଁ ମୋର କାତର ପ୍ରାର୍ଥନା ।

**ଲଜ୍ଜାଂ ତ୍ୟକ୍ତ୍ୱା ପଦେ ଯାଚେ ଭକ୍ତିଂ ମାଂ ପ୍ରେମଲକ୍ଷଣାମ୍ ।**
**ଦେହି ଗୌରେ କୃପାସିନ୍ଧୋ ! ତ୍ୱଦ୍ବିନା ନାସ୍ତିଦୁଃଖହା ।୯୮।**

ହେ ଗୌରଚନ୍ଦ୍ର ! ମୁଁ ସର୍ବତୋଭାବେ ଲଜ୍ଜାତ୍ୟାଗକରି ଆପଣଙ୍କର ଚରଣରେ ଏହି ପ୍ରାର୍ଥନା କରୁଛି, ଯେ ପ୍ରେମ ଲକ୍ଷଣାଭକ୍ତି ପ୍ରଦାନ କରନ୍ତୁ । ହେ କୃପାସିନ୍ଧୋ ! ଆପଣଙ୍କ ବିନା ମୋର ଦୁଃଖହା କେହି ନାହିଁ ।

**ଅନେକ ଜନ୍ମକୃତ ମଜ୍ଜନୋଽବ୍ଧ୍ୟେ**
**ସିଦ୍ଧିଂ କୁରୁଷ୍ୱ ପ୍ରଭୁଗୌରଚନ୍ଦ୍ର ।**
**ସମୁଜ୍ଜ୍ୱଲାଂ ତେ ପାଦପଦ୍ମ ସେବାଂ**
**କରୋମି ନିତ୍ୟଂ ହରିକୀର୍ତ୍ତନଞ୍ଚ ।୯୯।**

ହେ ଗୌରଚନ୍ଦ୍ର ! ମୁଁ ବହୁ ଜନ୍ମାନ୍ତରରୁ ସଂସାର ସାଗରରେ ମଗ୍ନ ହୋଇଅଛି - ଦୟାକରି ଉଦ୍ଧାର କରନ୍ତୁ । ମୋର କାତର ପ୍ରାର୍ଥନା ଯେ ଆପଣଙ୍କର ସମୁଜ୍ଜ୍ୱଳ ପାଦପଦ୍ମ ସେବା ନିତ୍ୟ କରିବି ଏବଂ ନିରବଧି ନିରୁପାଧି ହରିସଂକୀର୍ତ୍ତନ କରିପାରିବି ।

**ବ୍ରଜେନ୍ଦ୍ର ନନ୍ଦନାଭିନ୍ନଂ ଗୌରାଙ୍ଗତ୍ୱାଂ ନିବେଦୟେ ।**

**କୃପାଂକୁରୁ ଦୟାନାଥ ! ସର୍ବସେବାଂ କରୋମ୍ୟହମ୍ ।୧୦୦।**

ହେ ମହାପ୍ରଭୋ ! ଆପଣ ବ୍ରଜେନ୍ଦ୍ରନନ୍ଦନଙ୍କଠାରୁ ସ୍ୱରୂପତଃ ଭିନ୍ନ ନୁହଁ । ହେ ଦୟାନିଧି ! ହେ ନାଥ ! ଆପଣଙ୍କର ଚରଣରେ ମୋର ଏଇ ପ୍ରାର୍ଥନା, କୃପାକରି ମୋତେ ସର୍ବଭାବରେ ସେବାର ଯୋଗ୍ୟ କରି ସେବା ପ୍ରଦାନ କରନ୍ତୁ ।

## ॥ ଫଳଶ୍ରୁତି ॥

**ଗୀୟତେ ଯେ ରତିଭ୍ୱେନ ଚୈତନ୍ୟ-ଶତକଂ ମୁଦା ।**

**ଯଃ ପଠେତ୍ ଶ୍ରୁୟତେ ନିତ୍ୟଂ ପ୍ରାପ୍ତିସ୍ୟାତ୍ ଶ୍ରୀଶଚୀସୁତେ ।।**

ଯିଏ ଆନନ୍ଦ ରତି ଓ ଭକ୍ତିପୂର୍ବକ ଏହି ଶ୍ରୀଚୈତନ୍ୟଶତକ ପାଠ ଓ ଶ୍ରବଣ କରନ୍ତି, ସେ ଅବଶ୍ୟ ଶ୍ରୀ ଶଚୀନନ୍ଦନ ଗୌରହରିଙ୍କୁ ପ୍ରାପ୍ତ କରିବେ, ଅର୍ଥାତ୍ ଶ୍ରୀ ପାଦପଦ୍ମ ସେବା ଲାଭ କରିବେ ।

*ଇତି ଶ୍ରୀ ଶ୍ରୀ ଚୈତନ୍ୟାନୁଚର*
*ଶ୍ରୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ବିରଚିତଂ-*
*ଶ୍ରୀ ଶ୍ରୀ ଚୈତନ୍ୟ-ଶତକଂ*
*ସମାପ୍ତମ୍ ।*



॥ ଜୟ ଗୌର ॥

ଶ୍ରୀମଦ୍ ଗୌଡ଼ୀୟ ବେଦାନ୍ତ ବିଦ୍ୱାନ୍
ଶ୍ରୀମଦ୍ ଆନନ୍ଦ ଗୋପାଳ ବିଦ୍ୟାଲଙ୍କାର ବେଦାନ୍ତତୀର୍ଥ ବିରଚିତ

# ଶ୍ରୀ ଶ୍ରୀ ହରିଦାସ ଠାକୁର ମହିମା ଶତକମ୍

**ଶ୍ରୀ ଗୌରାଙ୍ଗ ପ୍ରଭୁଂ ବନ୍ଦେ ନବଦ୍ୱୀପ ସୁଧାକରମ୍ ।**
**ତସ୍ୟ ଚ ପ୍ରିୟ ପାର୍ଷଦଂ ହରିଦାସଂ ନମାମ୍ୟହମ୍ ।।**
**ଶ୍ରୀମଦ୍ ବେଦାନ୍ତତୀର୍ଥେନ ରାଧାକୁଣ୍ଡ ନିବାସିନା ।**
**ଶତକଂ ହରିଦାସସ୍ୟ କ୍ରିୟତେ ତୁ ସତାଂ ମୁଦା ।।**

ଅନୁବାଦ - ଶ୍ରୀ ଶଚୀମାତାଙ୍କର ଗର୍ଭରୂପ ସିନ୍ଧୁରୁ ନବଦ୍ୱୀପ ରୂପକ ପୂର୍ବାକାଶର ସୁଧାକର-ଚନ୍ଦ୍ରମା ସଦୃଶ ଶ୍ରୀ ଗୌରାଙ୍ଗ ମହାପ୍ରଭୁଙ୍କୁ ବନ୍ଦନା କରୁଅଛି ଏବଂ ତତ୍ ସଙ୍ଗେ ସଙ୍ଗେ ତାଙ୍କର ପ୍ରିୟପାର୍ଷଦ ହରିଦାସ ଠାକୁରଙ୍କୁ ମଧ ପ୍ରଣାମ କରୁଅଛି ।

ଶ୍ରୀ ରାଧାକୁଣ୍ଡ ନିବାସୀ ଶ୍ରୀମଦ୍ ଆନନ୍ଦଗୋପାଳ ବେଦାନ୍ତତୀର୍ଥ ମହୋଦୟଙ୍କ ଦ୍ୱାରା ସାଧୁଜନମାନଙ୍କର ଆନନ୍ଦ ବର୍ଦ୍ଧନ ନିମିତ୍ତ ଶ୍ରୀ ହରିଦାସ ଠାକୁରଙ୍କର ଶତକ ରଚନା କରୁଅଛି ।

**ଶ୍ରୀ ଅଦ୍ୱୈତ କୃପା ପୂର୍ଣ୍ଣଂ ସର୍ବଶାସ୍ତ୍ରବିଶାରଦମ୍ ।**
**ନାମ ଗାନେ ସଦାମତ୍ତଂ ହରିଦାସଂ ନମାମ୍ୟହମ୍ ।୧।**

ଶ୍ରୀ ମହାବିଷ୍ଣୁ ଅବତାର ଅଦ୍ୱୈତ ପ୍ରଭୁଙ୍କର ସମ୍ପୂର୍ଣ୍ଣ କୃପାପାତ୍ର କାରଣ, କୃଷ୍ଣମନ୍ତ୍ର ଦିକ୍ଷା ଦ୍ୱାରା ସମ୍ପୂର୍ଣ୍ଣ ଶକ୍ତି ସଞ୍ଚାର କରିଥିଲେ ଓ ହରିଦାସଙ୍କ ସହିତ ଅଦ୍ୱୈତ ପ୍ରଭୁ ସମସ୍ତ ଶାସ୍ତ୍ର ଆଲୋଚନା ଇଷ୍ଟଗୋଷ୍ଠି ଆଦିଦ୍ୱାରା କୃପା

କରିଥିବା ସମସ୍ତ ଶାସ୍ତ୍ରବିଶାରଦ, ଶ୍ରୀଭଗବନ୍ନାମ ଗାନରେ ସଦା ମତ୍ତ ହରିଦାସଙ୍କୁ ମୁଁ ପ୍ରଣାମ କରୁଅଛି ।

**ବେନାପୋଲ ବନେତିଷ୍ଠନ୍ ମହାମନ୍ତ୍ରଂ ଜଜାପୟଃ ।**

**ବୃନ୍ଦାମଞ୍ଚ ସମୀପସ୍ଥଂ ହରିଦାସଂ ନମାମି ତମ୍ ।୨।**

ବେନାପୋଲ ନାମକ ସ୍ଥାନର ନିକଟବର୍ତ୍ତୀ ଜଙ୍ଗଲରେ ଅବସ୍ଥାନ କାଳରେ କୁଟୀର ନିର୍ମାଣ କରି, କୁଟୀର ସମ୍ମୁଖରେ ତୁଳସୀ ମଞ୍ଚ ସ୍ଥାପନ କରି କୋଟି ମନ୍ତ୍ରଜପର ନିୟମ ଧାରଣପୂର୍ବକ ଯିଏ ମହାମନ୍ତ୍ର ଜପ କରୁଥିଲେ, ସେହି ହରିଦାସ ଠାକୁରଙ୍କୁ ପ୍ରଣାମ କରୁଅଛି ।

**ତୁଳସୀ ପୁଷ୍ପ ସୌରଭଂ ସ୍ଥାନ ଗୌରବ ବର୍ଦ୍ଧନମ୍ ।**

**ତତ୍ରସ୍ଥ ନାମନିଷ୍ଠଂ ଶ୍ରୀ ହରିଦାସଂ ନମାମ୍ୟହମ୍ ।୩।**

ତୁଳସୀ ମଞ୍ଜରୀର ପୁଷ୍ପ ସୌରଭଦ୍ୱାରା ସେହି ସ୍ଥାନର ପବିତ୍ରତା ଅତି ବର୍ଦ୍ଧିତ ହୋଇଥିଲା । ସେହି ସ୍ଥାନରେ ନିବାସ କରୁଥିବା ହରିନାମନିଷ୍ଠ ଶ୍ରୀହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ରାଜପୁଷ୍ଟ ମହାଦୁଷ୍ଟ ଅଧମଃ ରାମଚନ୍ଦ୍ରକ ।**

**ଯଂ ଦୃଷ୍ଟ୍ୱା ହିଂସୟାମାସ ହରିଦାସଂ ନମାମି ତମ୍ ।୪।**

ଯବନ ରାଜାଙ୍କ ଦ୍ୱାରା ପାଳିତ ଅତି ଅଧମ ଓ ମହାଦୁଷ୍ଟ ସାମନ୍ତ ରାଜା ବେନାପୋଲର ଅଧିକାରୀ ରାମଚନ୍ଦ୍ର ଖାନ୍ ଯାହାଙ୍କୁ ଦେଖି ହିଂସା ଆଚରଣ କରିଥିଲେ ଏବଂ ଲକ୍ଷ୍ୟ ଭ୍ରଷ୍ଟ କରିବା ପାଇଁ ଲକ୍ଷ ହୀରା ନାମ୍ନୀ ବାରାଙ୍ଗନା ପ୍ରେରଣ କରିଥିଲେ । ସେହି ହରିଦାସଙ୍କୁ ମୁଁ ପ୍ରଣାମ କରୁଅଛି ।

**ଲକ୍ଷହୀନାଂ ଲକ୍ଷହୀରାଂ ଲକ୍ଷ୍ୟ ବଦ୍ଧାଂଚକାରୟଃ ।**

**କୃଷ୍ଣନାମ ପ୍ରଦାନେନ ହରିଦାସଂ ନମାମି ତମ ।୫।**

ସେହି ଲକ୍ଷହୀନା ଲକ୍ଷହୀରା ହରିଦାସ ଠାକୁରଙ୍କର ଦର୍ଶନ କରି ତାର ଲକ୍ଷରୁ ଓହରି ଯିବା ପରେ, ତିନିଦିନ ନାମ ଶ୍ରବଣ କରାଇ

ପରିଶେଷରେ ହରିନାମ ଉପଦେଶ ଦେଇ ଲକ୍ଷନାମ ଗ୍ରହ ରୂପକ ନିୟମରେ ଆବଦ୍ଧ କରିଦେଇଥିଲେ । ସେହି ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ସ୍ୱୈରଂ ଶ୍ରୀନାମକୀର୍ତ୍ତନଂ ଭ୍ରମଣଂ ଜାହ୍ନବୀ ତୀରେ ।**
**ସର୍ବଜନ ପ୍ରମୋଦିନଂ ହରିଦାସଂ ନମାମ୍ୟହମ୍ ।୬।**

ସ୍ୱଚ୍ଛନ୍ଦ ଭାବରେ ଶ୍ରୀନାମ କୀର୍ତ୍ତନ କରି ସମସ୍ତ ଲୋକମାନଙ୍କୁ ଆନନ୍ଦ ପ୍ରଦାନପୂର୍ବକ ଗଙ୍ଗାଙ୍କର ତୀରରେ ଭ୍ରମଣ କରୁଥିବା, ସେହି ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ଜଗନ୍ମୋହନକାରୀଣିଂ ମାୟାଂଦାସୀଂ ଚକାର ଯଃ ।**
**କୃଷ୍ଣନାମ ପ୍ରଦାନେନ ହରିଦାସଂ ନମାମିତମ୍ ।୭।**

ଜଗନ୍ମୋହନକାରୀଣୀ ବହିରଙ୍ଗା ମାୟାଦେବୀଙ୍କୁ କୃଷ୍ଣନାମ ପ୍ରଦାନ କରି ଶିଷ୍ୟଭାବରେ ଦାସତ୍ୱ ପ୍ରଦାନ କରିଥିଲେ, ସେହି ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ନଗରେ ଜାହ୍ନବୀତୀରେ ଚରେ ପ୍ରାନ୍ତରେ ତଥା ।**
**କୃଷ୍ଣନାମ ଗାୟନ୍ନୁଚ୍ଚୈଃ ଭ୍ରମନ୍ତଂ ତଂ ନମାମ୍ୟହମ୍ ।୮।**

ଗଙ୍ଗାଙ୍କର ତୀରରେ ତୀରସ୍ଥ ନଗରମାନଙ୍କରେ, ପୁଳିନ (ଚର-ଗଙ୍ଗାଙ୍କର ତ୍ୟକ୍ତଭୂମି) ଗୁଡ଼ିକରେ ଏବଂ ଗୋଚର ବନଭୂମିରେ ଯିଏ ଉଚ୍ଚସ୍ୱରରେ କୃଷ୍ଣନାମ ଗାନ କରି ଭ୍ରମଣ କରୁଛନ୍ତି, ତାହାଙ୍କୁ ପ୍ରଣାମ କରୁଅଛି ।

**ନବଦ୍ୱୀପ ଭୟାନକ ଦୁର୍ମତି ଗୌଡ଼ାଇ କାଜୀ ।**
**ବିଦ୍ୱେଷଞ୍ଚ କାରୟଂ ତଂ ହରିଦାସଂ ନମାମ୍ୟହମ୍ ।୯।**

ନବଦ୍ୱୀପର ଭୟାନକ ଦୁଷ୍ଟ ଅଧିକାରୀ ଚାନ୍ଦ କାଜୀ ଯାହାର ବିଦ୍ୱେଷ ଆଚରଣ କରିଥିଲେ, ସେହି ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ହସ୍ତେ ଗଳେଚ ବଦ୍ଧା ଯଂ ବିଚାରାର୍ଥଂ ସମାନୟତ୍ ।**
**ଚାନ୍ଦକାଜୀ ସଭାୟାଂ ତଂ ହରିଦାସଂ ନମାମ୍ୟହମ୍ ।୧୦।**

ହସ୍ତରେ ଓ ଗଳାରେ ବନ୍ଧନ କରି ବିଚାରଣାର୍ଥରେ ଯାହାଙ୍କୁ ଚାନ୍ଦକାଜୀଙ୍କର ସଭାକୁ ଆନୟନ କରାଯାଇଥିଲା, ସେହି ହରିଦାସ ଠାକୁରଙ୍କୁ ମୁଁ ନମସ୍କାର କରୁଅଛି ।

**ଉବାଚ ଭୋ ! ମହାପ୍ରାଜ୍ଞ ! ହରିଦାସ ମହାମତେ ।**
**କଥଂ ସ୍ୱଧର୍ମଂ ସନ୍ତଜ୍ୟ ପରଧର୍ମଂ ସମାଶ୍ରିତମ୍ ।୧୧।**

ଯାହାଙ୍କୁ ଚାନ୍ଦକାଜୀ କହିଥିଲେ - ହେ ମହାପ୍ରାଜ୍ଞ (ବିଦ୍ୱାନ୍) ! ହେ ମହାମତୀ ହରିଦାସ ! କାହିଁକି ସ୍ୱଧର୍ମ ପରିତ୍ୟାଗ କରି ପରଧର୍ମକୁ ଆଶ୍ରୟ କରୁଅଛ ?

**ମୁସଲମାନ କୁଳେ ଜାତଂ ମହାଭାଗ୍ୟେନ ପଶ୍ୟତ ।**
**ତସ୍ମାତ୍ତଂ ତତ୍ ପରିତ୍ୟଜ୍ୟ ସ୍ୱଧର୍ମ ଗ୍ରହଣଂ କୁରୁ ।୧୨।**

ଦେଖ, ବହୁଭାଗ୍ୟର ଫଳ ହେତୁ ମୁସଲ୍‌ମାନ କୁଳରେ ଜାତ ହୋଇଅଛ । ଏଣୁ ତୁମେ ହିନ୍ଦୁଧର୍ମ ପରିତ୍ୟାଗ କରି ସ୍ୱଧର୍ମ (ଯବନ) ଧର୍ମ ଗ୍ରହଣ କର ।

**ତତ୍ ଶ୍ରୁତ୍ୱା ବଚନଂ ତସ୍ୟ ଗୌରାଙ୍ଗ ପାର୍ଷଦାଗ୍ରଣୀ ।**
**ସିଦ୍ଧାନ୍ତପୂର୍ଣ୍ଣ ବାକ୍ୟେନ ତୋଷୟାମାସ ଶାସକମ୍ ।୧୩।**

ଶ୍ରୀଗୌରାଙ୍ଗ ପାର୍ଷଦାଗ୍ରଗଣ୍ୟ ଶ୍ରୀ ହରିଦାସ ଏହିଭଳି ତାହାଙ୍କର ବଚନ ଶ୍ରବଣ କରି, ସୁସିଦ୍ଧାନ୍ତ ପୂର୍ଣ୍ଣ ବାକ୍ୟଦ୍ୱାରା ଉଭୟ ଧର୍ମର ତୁଳନାତ୍ମକ ବାକ୍ୟଦ୍ୱାରା ଯବନ ଶାସକଙ୍କୁ ସନ୍ତୁଷ୍ଟ କରିଦେଇପାରିଥିଲେ ।

**ତଥାପି ଦୁଷ୍ଟ ବାକ୍ୟେନ ଦ୍ୱାବିଂଶତି ଜନାଳୟେ ।**
**ଦଣ୍ଡରୂପଂ କଶାଘାତଂ ସୁନିଶ୍ଚିତଂ ଚକାର ହ ।୧୪।**

ତଥାପି ଦୁଷ୍ଟମାନଙ୍କର କୁମନ୍ତ୍ରଣା ପ୍ରାପ୍ତ ହୋଇ, ଯବନ ହୋଇ ହିନ୍ଦୁ ଧର୍ମ ଗ୍ରହଣ କରିବାର ଦଣ୍ଡସ୍ୱରୂପ ବାଇଶ (୨୨) ବଜାରରେ ବେତ୍ର ପ୍ରହାର ସୁନିଶ୍ଚିତ କରିଥିଲେ ।

**ବେତ୍ରାଘାତଂ ପ୍ରକୁର୍ବଦ୍‌ଭିଃ ଘାତକୈଃ ପରିତୋବୃତମ୍ ।**
**ନିର୍ଣ୍ଣୟାମାସ ନାମ୍ନାବୈ ହରିଦାସଂ ନମାମ୍ୟହମ୍ ।୧୫।**

ବେତ୍ରାଘାତ କରୁଥିବା ଘାତକମାନଙ୍କ ଦ୍ୱାରା ପରିବୃତ୍ତ ହୋଇ ଯିଏ ନିର୍ଣ୍ଣୟ କରିଥିଲେ "ଖଣ୍ଡ ଖଣ୍ଡ ହୋଇ ଯେବେ ପିଣ୍ଡୁଯାଏ ପ୍ରାଣ, ତଥାପିହ ବଦନୁ ନା ଛାଡ଼ିବ ହରିନାମ ।'' ପ୍ରାଣ ଚାଲିଗଲେ ମଧ ନାମ ତ୍ୟାଗ କରିବେ ନାହିଁ ଏଭଳି ପ୍ରତିଜ୍ଞାକାରୀ ହରିଦାସଙ୍କୁ ମୁଁ ପ୍ରଣାମ କରୁଅଛି ।

**ନ ମମାର ଯଦା ସଃ ଶ୍ରୀ ହରିଦାସ ମହାମତିଃ।**
**ତେଷାଂ ତୁ ବିସ୍ମୟଂ ଜାତଂ ଘାତକାନାଂ ମହଦ୍‌ଭୟମ୍ ।୧୬।**

ବାଇଶ ବଜାରରେ ବେତ୍ରାଘାତ ଦ୍ୱାରା ଯଦି ମହାମତି ହରିଦାସଙ୍କର ମୃତ୍ୟୁ ନ ହୋଇଥିଲା, ସେତେବେଳେ ଘାତକମାନଙ୍କର ମନରେ ବିସ୍ମୟ ହୋଇଥିଲା ଏବଂ ମହାଭୟ ମଧ ଜାତ ହୋଇଥିଲା ।

**ତାନ୍ ତଥା କୃପଣାନ୍ ଦୃଷ୍ଟ୍ୱା ମହାକାରୁଣିକ ପ୍ରଭୁଃ ।**
**ସ୍ୱୟମେବ ସମାଧୌତୁ ତସ୍ଥୌ ସର୍ବଂ ବିହାୟ ଚ ।୧୭।**

ସେହି ଘାତକମାନେ କାତର ହୋଇ, ହରିଦାସଙ୍କୁ ମୃତ୍ୟୁ ସ୍ୱୀକାର କରିବା ପାଇଁ ଏବଂ ଘାତକମାନଙ୍କର ଜୀବନ ରକ୍ଷାପାଇଁ ପ୍ରାର୍ଥନା କରିଥିଲେ । ଏହିଭଳି କାତର ଘାତକମାନଙ୍କୁ ଦେଖି ମହାନ୍ କାରୁଣିକ ପ୍ରଭୁ ହରିଦାସ ସମସ୍ତ ତ୍ୟାଗପୂର୍ବକ ପ୍ରାଣବାୟୁ ଅବରୋଧ କରି ସମାଧିସ୍ଥ ରହିଯାଇଥିଲେ ।

**ତେ ତୁ ତଂ ମୃତକଂ ମତ୍ୱା ଗଙ୍ଗାୟାଂ ବିନିଚିକ୍ଷିପୁଃ ।**
**ଶ୍ରୋତସା ବାହ୍ୟମାନା ସଃ ଫୁଲିୟା ନଗରଂ ଗତଃ ।୧୮।**

ସେହି ଘାତକମାନେ ହରିଦାସଙ୍କୁ ମୃତକ (ଶବ) ଜ୍ଞାନରେ ରାଜାଙ୍କର ଆଦେଶାନୁସାର ଗଙ୍ଗାରେ ପ୍ରବାହିତ କରିଦେଲେ ଏବଂ ସ୍ରୋତରେ ପ୍ରବାହିତ ହୋଇ ଶାନ୍ତିପୁର ନିକଟସ୍ଥ ଫୁଲିୟା ନଗରରେ ଆସି ପହଞ୍ଚିଥିଲେ ।

**ଯସ୍ୟ କୀର୍ତ୍ତନ ଶବ୍ଦେନ ଗୋଲକସ୍ଥଂ ପରାତ୍‌ପରଂ ।**
**ସମାକୃଷ୍ଟଂ ନବଦ୍ୱୀପେ ହରିଦାସଂ ନମାମିତମ୍ ।୧୯।**

ଯାହାର ନାମ କୀର୍ତ୍ତନ ଶବ୍ଦଦ୍ୱାରା ଗୋଲକଧାମସ୍ଥ ପରାତ୍‌ପର ଭଗବାନ୍ ଶ୍ରୀକୃଷ୍ଣ ସମ୍ପୂର୍ଣ୍ଣରୂପେ ଆକର୍ଷିତ ହୋଇ ନବଦ୍ୱୀପରେ ଗୌରାଙ୍ଗ ରୂପେ ପ୍ରକଟ ହୋଇଥିଲେ, ସେହି ହରିଦାସ ଠାକୁରଙ୍କୁ ପ୍ରଣାମ କରୁଅଛି ।

**ଆଦ୍ୱୈତାକର୍ଷିଣଂ ବନ୍ଦେ ଜଗନ୍ନାଥ-ଶଚୀସୁତମ୍ ।**
**ନିତ୍ୟାନନ୍ଦ ପ୍ରିୟଂ ଶ୍ରୀମଦ୍ ହରିଦାସ ପ୍ରିୟେଶ୍ୱରମ୍ ।୨୦।**

ଅଦ୍ୱୈତ ପ୍ରଭୁଙ୍କ ଦ୍ୱାରା ଗଙ୍ଗାଜଳ ଏବଂ ତୁଳସୀପତ୍ର ନାମ ଗାନ ଓ ହୁଙ୍କାରାଦି ଶବ୍ଦଦ୍ୱାରା ଆକର୍ଷିତ, ଜଗନ୍ନାଥ ମିଶ୍ର ଓ ଶଚୀମାତାଙ୍କର ପୁତ୍ର, ନିତ୍ୟାନନ୍ଦଙ୍କର ପ୍ରିୟ ଏବଂ ହରିଦାସଙ୍କର ପ୍ରିୟ ଈଶ୍ୱରଙ୍କୁ ମୁଁ ବନ୍ଦନା କରୁଅଛି ।

**ନବଦ୍ୱୀପ ସୁଧାକର ସୁଧାସ୍ୱାଦ ଚକୋରକମ୍ ।**
**ନବଦ୍ୱୀପ ନିବାସିନଂ ହରିଦାସଂ ନମାମ୍ୟହମ୍ ।୨୧।**

ନବଦ୍ୱୀପ ସୁଧାକର ଶ୍ରୀଗୌରାଙ୍ଗସୁନ୍ଦରଙ୍କର ରୂପ, ଗୁଣ, ଲୀଳା, ନାମ ଅମୃତ ଆସ୍ୱାଦନକାରୀ ଚକୋର ସଦୃଶ ନବଦ୍ୱୀପ ନିବାସକାରୀ ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ମୁରାରି ଶ୍ରୀ ଗଦାଧର ଶ୍ରୀନିବାସାଦି ବୈଷ୍ଣବୈଃ ।**
**ସଂକୀର୍ତ୍ତନଂ ଚକାରୋଚ୍ଚୈଃ ହରିଦାସଂ ନମାମି ତମ୍ ।୨୨।**

ମୁରାରୀଗୁପ୍ତ (ଶ୍ରୀ ହନୁମଦାବତାର) ଶ୍ରୀ ଗଦାଧର (ଶ୍ରୀମତୀ ରାଧାରାଣୀଙ୍କ ଅବତାର) ଶ୍ରୀନିବାସ (ନାରଦାବତାର) ଆଦି ବୈଷ୍ଣବମାନଙ୍କ

ସହିତ ଯିଏ ଉଚ୍ଚ ସଂକୀର୍ତ୍ତନ କରନ୍ତି, ସେହି ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ବାଲରୂପଂ ପରଂବ୍ରହ୍ମ ଶ୍ରୀଗୌରାଙ୍ଗ ମହାପ୍ରଭୁମ୍ ।**
**ଦୃଷ୍ଟ୍ୱାପ୍ରୀତି ମବାପ ଯୋ ହରିଦାସଂ ନମାମି ତମ୍ ।୨୩।**

ଯେଉଁ ପରଂବ୍ରହ୍ମ ଶ୍ରୀଗୌରାଙ୍ଗ ମହାପ୍ରଭୁଙ୍କୁ ବାଳକ ରୂପରେ ଦେଖି ଯିଏ ଅତ୍ୟଧିକ ଆନନ୍ଦ ହର୍ଷ ପ୍ରାପ୍ତ ହୋଇଥିଲେ, ସେହି ହରିଦାସ ଠାକୁରଙ୍କୁ ପ୍ରଣାମ କରୁଅଛି ।

**ଶ୍ରୀବାସସ୍ୟାଙ୍ଗନେ ନିତ୍ୟଂ ରାତ୍ରି କୀର୍ତ୍ତନ ପାରଗୈଃ।**
**ନୃତ୍ୟତି ପ୍ରଭୁନା ସାର୍ଦ୍ଧଂ ହରିଦାସଂ ନମାମି ତମ୍ ।୨୪।**

ନିତ୍ୟ ରାତ୍ରି କାଳରେ ଶ୍ରୀବାସଙ୍କ ଅଙ୍ଗନଠାରେ ସଂକୀର୍ତ୍ତନ ପାରଙ୍ଗମମାନଙ୍କ ଗହଣରେ, ମହାପ୍ରଭୁଙ୍କ ସହିତ ଯିଏ ନୃତ୍ୟ କରନ୍ତି ସେହି ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ନିତ୍ୟାନନ୍ଦଂ ରସାଗାରଂ ଗୌରାଙ୍ଗ ପ୍ରିୟ ବିଗ୍ରହମ୍ ।**
**ଦୃଷ୍ଟ୍ୱା ମୁଦମବାପ ଯୋ ହରିଦାସଂ ନମାମି ତମ୍ ।୨୫।**

ଶ୍ରୀ ଗୌରାଙ୍ଗ ମହାପ୍ରଭୁଙ୍କର ଅଭିନ୍ନ ପ୍ରିୟ ବିଗ୍ରହ ସମସ୍ତ ରସର ଭଣ୍ଡାର ସ୍ୱରୂପ ନିତ୍ୟାନନ୍ଦ ପ୍ରଭୁଙ୍କୁ ଦେଖି ଯିଏ ଆନନ୍ଦ ପ୍ରାପ୍ତ ହୁଅନ୍ତି, ସେହି ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ଏକଚକ୍ରା ସୁଧାକର ନବଦ୍ୱୀପ ସୁଧାକରୌ ।**
**ସୁଧୟା ସ୍ନାପିତଂ ଯଂ ତଂ ହରିଦାସଂ ନମାମ୍ୟହମ୍ ।୨୬।**

ଏକଚକ୍ରା ଧାମର ସୁଧାକର ଶ୍ରୀ ନିତ୍ୟାନନ୍ଦ ପ୍ରଭୁ ଏବଂ ନବଦ୍ୱୀପ ଧାମର ସୁଧାକର 'ଚନ୍ଦ୍ର' ଶ୍ରୀମନ୍‌ଗୌରାଙ୍ଗ ମହାପ୍ରଭୁ ଉଭୟେ ନିଜ ନିଜର ପ୍ରେମଭକ୍ତିରୂପକ କୃପା ଅମୃତ ଦ୍ୱାରା ଯାହାକୁ ପରିପ୍ଳୁତ କରିଅଛନ୍ତି, ସେହି ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ମହାପ୍ରକାଶ ବେଳାୟାଂ ସ୍ୱୟଂ ଗୌର ପ୍ରଭୁ ର୍ମହାନ୍ ।**
**ମହିମାନଂ ଜଗାଦୋଚ୍ଚୈଃ ମମାସ୍ତୁ ଶରଣଂ ସତୁ ।୨୭।**

ମହାପ୍ରକାଶ କାଳରେ ସ୍ୱୟଂ ମହାପ୍ରଭୁ ଗୌରସୁନ୍ଦର ଯାହାର ମହାନ୍ ମହିମାକୁ ଉଚ୍ଚସ୍ୱରରେ ଗାନ (ପ୍ରକାଶିତ) କରିଥିଲେ ସେହି ହରିଦାସ ଠାକୁର ମୋର ଶରଣ (ଆଶ୍ରୟ) ହୁଅନ୍ତୁ ।

**ଜଗଦୁଦ୍ଧାର କାର୍ଯ୍ୟେ ଯୋ ନିତ୍ୟାନନ୍ଦେନ ଗଚ୍ଛତି ।**
**ଅନୁଗୃହଂ ପରିତ୍ରାୟଣ ହରିଦାସଂ ନମାମି ତମ୍ ।୨୮।**

ଜଗତ୍ ଉଦ୍ଧାର ସମୟରେ ଯିଏ ନିତ୍ୟାନନ୍ଦ ପ୍ରଭୁଙ୍କର ସହିତ ଗୃହେ ଗୃହେ ଗମନ କରି କଳିହତ ଜୀବମାନଙ୍କୁ ହରିନାମ ଉପଦେଶ ଦେଇ ପରିତ୍ରାଣ କରିଛନ୍ତି, ସେହି ହରିଦାସ ଠାକୁରଙ୍କୁ ପ୍ରଣାମ କରୁଅଛି ।

**ନବଦ୍ୱୀପ ଭୟାନକଂ ମାରକଂ ବ୍ରହ୍ମବାନ୍ଧବମ୍ ।**
**ସ୍ୱବାନ୍ଧବଂ କୃତଂ ଯେନ ହରିଦାସଂ ନମାମି ତମ୍ ।୨୯।**

ଶ୍ରୀନବଦ୍ୱୀପର ରାକ୍ଷସବତ୍ ଆଚରଣକାରୀ ଭୟାନକ ଦୁଇଜଣ ନିନ୍ଦିତ ବ୍ରାହ୍ମଣ ଜଗାଇ ଓ ମାଧାଇଙ୍କୁ କୃପାକରି ସେମାନଙ୍କର ସମସ୍ତ ଦୋଷ ଦୂରକରି ବୈଷ୍ଣବ ଶ୍ରେଷ୍ଠ ନିଜ ବାନ୍ଧବ କରିଦେଇଥିଲେ, ସେହି ହରିଦାସଙ୍କୁ ମୁଁ ପ୍ରଣାମ କରୁଅଛି ।

**ଜୟତି ଜାହ୍ନବା ପତିମଗତି ଗତି କାରକଃ ।**
**ତାରକୋ ହରିଦାସେନ ପ୍ରଭୁଦ୍ୱୟଂ ନମାମ୍ୟହମ୍ ।୩୦।**

ଅଗତିର ଗତି ଦାତା ଜାହ୍ନବାଦେବୀଙ୍କର ପତି ଶ୍ରୀମନ୍ନିତ୍ୟାନନ୍ଦ ପ୍ରଭୁଙ୍କର ଜୟ ହେଉ । କଳିହତ ଜୀବଙ୍କୁ ତ୍ରାଣକାରୀ ହରିଦାସଙ୍କ ସହିତ ଦୁଇ ପ୍ରଭୁଙ୍କୁ (ନିତାଇଗୌରଙ୍କୁ) ମୁଁ ପ୍ରଣାମ କରୁଅଛି ।

**କୃତଃ ସନ୍ୟାସ ରୂପେଣ ଶ୍ରୀଗୌରାଙ୍ଗ ମହାପ୍ରଭୁଃ ।**
**ନିତ୍ୟାନନ୍ଦାଦି ସାର୍ଦ୍ଧେନ ନୀଳାଚଳଂ ଜଗାମ ହ ।୩୧।**

ଶ୍ରୀ ଗୌରାଙ୍ଗ ମହାପ୍ରଭୁ ସନ୍ନ୍ୟାସ ବେଶ ଧାରଣ କରି ନିତ୍ୟାନନ୍ଦ ଆଦି ପାର୍ଷଦଗଣଙ୍କ ସହ ନୀଳାଚଳ ଶ୍ରୀକ୍ଷେତ୍ରକୁ ଗମନ କଲେ ।

**ନୀଳଭୂଧର ଗହ୍ୱର ବାସିନଂ ଗିରିଧାରିଣମ୍ ।**
**ରାଧିକା ପ୍ରେମ ବିକ୍ଷୁବ୍ଧଂ ଜଗନ୍ନାଥଂ ମହାପ୍ରଭୁମ୍ ।୩୨।**

ଶ୍ରୀଚୈତନ୍ୟ ମହାପ୍ରଭୁ ସ୍ୱୟମ୍ ତାହାଙ୍କୁ ଆସ୍ୱାଦନ କରିବାପାଇଁ ଲବଣ ସମୁଦ୍ର ତୀରବର୍ତ୍ତି ନିଳାଦ୍ରି ଶିଖରକୁ ଗମନ କରିଥିଲେ ।

**ମହାପ୍ରଭୁ ଶ୍ରୀଚୈତନ୍ୟ ସ୍ତମାସ୍ୱାଦୟିତୁଂ ସ୍ୱୟମ୍ ।**
**ନିଳାଦ୍ରି ଶିଖରଂ ଯଯୌ ତୀରଂ ଲବଣ ବାରିଧେଃ ।୩୩।**

ନୀଳପର୍ବତ ଗହ୍ୱରରେ ବାସ କରୁଥିବା ନନ୍ଦନନ୍ଦନ ଗିରିଧାରୀ, ଯିଏ ବ୍ରଜଦେବୀ ଶ୍ରୀରାଧକାଙ୍କର ପ୍ରେମ ଦ୍ୱାରା ବିକ୍ଷୁବ୍ଧ ହୋଇ ଜଗନ୍ନାଥ ମହାପ୍ରଭୁ ହୋଇ ରହିଛନ୍ତି ।

**ପ୍ରଭୁ ବିରହ ତାପେନ ଦହ୍ୟମାନ ମହର୍ନିଶମ୍ ।**
**ନୀଳାଚଳଂ ସମାଗତଂ ହରିଦାସଂ ନମାମି ତମ୍ ।୩୪।**

ସେହି ଗୌରାଙ୍ଗ ମହାପ୍ରଭୁଙ୍କର ବିରହ ଜନିତ ତାପରେ ଅହର୍ନିଶ ଦଗ୍ଧିଭୂତ ହୋଇ ଶ୍ରୀନୀଳାଚଳକୁ ଆଗମନ କରିଥିଲେ, ସେହି ହରିଦାସଙ୍କୁ ପ୍ରଣାମ କରୁଅଛି ।

**ନୀଳାଚଳଂ ସମାଗତ୍ୟ ଶ୍ରୀନରେନ୍ଦ୍ର ସରସ୍ତୀରେ ।**
**ରାଜପଥି ତୁ ଧୂଳାୟାଂ ପପାତ ଯୌ ନମାମି ତମ୍ ।୩୫।**

ନୀଳାଚଳକୁ ଆଗମନକରି ଶ୍ରୀ ନରେନ୍ଦ୍ର ପୁଷ୍କରିଣୀର ନିକଟବର୍ତ୍ତୀ ରାଜମାର୍ଗର ଧୂଳି ଉପରେ ଯିଏ ସଂଜ୍ଞାହୀନ ହୋଇ ପଡ଼ିଯାଇଥିଲେ ତାହାଙ୍କୁ ମୁଁ ପ୍ରଣାମ କରୁଅଛି ।

**ଯଦର୍ଥଂ ତୁ ମହାପ୍ରଭୁ ମିଶ୍ରସ୍ୟ ନିଷ୍କୁଟେ ସ୍ୱୟମ୍ ।**
**ଗୃହମେକଂ ଯଯାଚ ତମ୍ ହରିଦାସଂ ନମାମ୍ୟହମ୍ ।୩୬।**

ଯାହାପାଇଁ ଶ୍ରୀମନ୍ମହାପ୍ରଭୁ ସ୍ୱୟମ୍ କାଶିମିଶ୍ରଙ୍କ ନିକଟରେ ଏକ ଗୃହ ମାଗିଥିଲେ, ସେହି ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ନମାମି ଶ୍ରୀ ହରିଦାସଂ ନିତ୍ୟଂ ଶ୍ରୀହରି ସେବକମ୍ ।**

**ଯସ୍ୟ ସେବାଂ କୃତଃ ସ୍ୱୟଂ ଶ୍ରୀଚୈତନ୍ୟ ମହାପ୍ରଭୁଃ ।୩୭।**

ଶ୍ରୀ ଚୈତନ୍ୟ ମହାପ୍ରଭୁ ସ୍ୱୟଂ ଯାହାର ସେବା କରନ୍ତି ସେହି ନିତ୍ୟ ହରିଙ୍କର ସେବକ ହରିଦାସଙ୍କୁ ପ୍ରଣାମ କରୁଅଛି ।

**ସୁଦର୍ଶନଂ ମହାଚକ୍ରଂ ଦୃଷ୍ଟ୍ୱା ଭାବ ବିଭୂଷିତମ୍ ।**

**ଭବତି ନିତରାଂ ନିତ୍ୟଂ ହରିଦାସଂ ନମାମ୍ୟହମ୍ ।୩୮।**

ଶ୍ରୀ ଜଗନ୍ନାଥ ମନ୍ଦିର ଶିଖର ସ୍ଥିତ ମହାଚକ୍ରରାଜ ସୁଦର୍ଶନ ନୀଳଚକ୍ରଙ୍କୁ ଦର୍ଶନ କରି ଯିଏ ମହାଭାବ ଦ୍ୱାରା ସଦାସର୍ବଦା ବିଭୂଷିତ ହୁଅନ୍ତି, ସେହି ହରିଦାସ ଠାକୁରଙ୍କୁ ମୁଁ ନିତ୍ୟ ପ୍ରଣାମ କରୁଅଛି ।

**ସନାତନଂ ପୁରା ଯସ୍ତୁ ସନାତନଂ ବଭୂବ ହ ।**

**ତେନ ସାର୍ଦ୍ଧଂ ପରାମୋଦଃ ହରିଦାସଂ ନମାମି ତମ୍ ।୩୯।**

ଯିଏ ବ୍ରହ୍ମାଙ୍କର ମାନସପୁତ୍ର ଚତୁସନ ମଧ୍ୟରେ ସନାତନ ନାମକ ପୁତ୍ର ବର୍ତ୍ତମାନ ଗୌରାବତାର କାଳରେ ସନାତନ ଗୋସ୍ୱାମୀ ଭାବରେ ଆବିର୍ଭୁତ ହୋଇଛନ୍ତି । ତାହାଙ୍କ ସହିତ ଦର୍ଶନ ଓ ଇଷ୍ଟଗୋଷ୍ଠି ଦ୍ୱାରା ପରମ ଆନନ୍ଦିତ ହେଉଥିବା ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ଶ୍ରୀରୂପାନନ୍ଦ ଦାୟିନଂ ସନାତନ ସଦାପ୍ରିୟମ୍ ।**

**ରାମାନନ୍ଦାଦି ଭାବାବ୍ଧିଂ ହରିଦାସଂ ନମାମ୍ୟହମ୍ ।୪୦।**

ଶ୍ରୀ ରୂପ ଗୋସ୍ୱାମୀଙ୍କୁ ଆନନ୍ଦ ପ୍ରଦାନ କାରୀ, ଶ୍ରୀ ସନାତନ ଗୋସ୍ୱାମୀଙ୍କର ସଦାପ୍ରିୟ, ଶ୍ରୀ ରାୟ ରାମାନନ୍ଦ ଆଦି ରସିକଗଣଙ୍କ ଭାବ ସମୁଦ୍ରରେ ଅବଗାହନକାରୀ ହରିଦାସଙ୍କୁ ନମସ୍କାର କରୁଅଛି ।

**ଶ୍ରୀରୂପକୃତ ନାଟକଂ ଯତ୍ ପ୍ରାଙ୍ଗଣେ ମହାପ୍ରଭୁଃ ।**
**ଆସ୍ୱାଦନଂ ଚକାର ତୁ ସ୍ୱରୂପାଦି ଗଣୈଃ ସହ ।୪୧।**

ଯାହାର ପ୍ରାଙ୍ଗଣରେ ଶ୍ରୀ ରୂପଗୋସ୍ୱାମୀକୃତ ଲଳିତମାଧବ, ବିଦଗ୍ଧ ମାଧବ ନାଟକଦ୍ୱୟ, ଶ୍ରୀମନ୍ମହାପ୍ରଭୁ ସ୍ୱରୂପାଦିଗଣଙ୍କ ସହିତ ଆସ୍ୱାଦନ କରିଥିଲେ ।

**ବକୁଳ ଦନ୍ତକାଷ୍ଠେନ ଜଗନ୍ନାଥ ମହାପ୍ରଭୋଃ ।**
**ଗୌରାଙ୍ଗେନ ବିରୋପିତଂ ସଦ୍ୟୋଽଭୂତ୍ କଳ୍ପ ବୃକ୍ଷତାମ୍ ।୪୨।**

ଜଗନ୍ନାଥ ମହାପ୍ରଭୁଙ୍କର ପ୍ରସାଦି ବକୁଳ ଦନ୍ତକାଷ୍ଠଟି ଗୌରାଙ୍ଗ ମହାପ୍ରଭୁଙ୍କର ଦ୍ୱାରା ରୋପିତ ହେଲେ, ସଦ୍ୟ ମହାକଳ୍ପବୃକ୍ଷ ରୂପକୁ ଧାରଣ କଲେ ।

**ସିଦ୍ଧବକୁଳ ମାଶ୍ରୟଂ ମହାମନ୍ତ୍ର ପ୍ରଗାୟକମ୍ ।**
**ବୈଷ୍ଣବାନାଂ ପ୍ରିୟକରଂ ହରିଦାସଂ ନମାମ୍ୟହମ୍ ।୪୩।**

ସେହି ସିଦ୍ଧବକୁଳକୁ ଆଶ୍ରୟକରି ମହାମନ୍ତ୍ର ଗାନକାରି ଏବଂ ବୈଷ୍ଣବମାନଙ୍କର ପ୍ରିୟ ହରିଦାସ ଠାକୁରଙ୍କୁ ମୁଁ ନମସ୍କାର କରୁଅଛି ।

**ପ୍ରଭୁପ୍ରିୟ ଗଣାନାଂତୁ ଗଣନଞ୍ଚ ଗଣାଗ୍ରଣିମ୍ ।**
**ସାର୍ବଭୌମ ଗଦାଧର ସ୍ୱରୂପାଦି ଜନ ପ୍ରିୟମ୍ ।୪୪।**

ମହାପ୍ରଭୁଙ୍କର ପ୍ରିୟମାନଙ୍କର ଗଣନାକାଳରେ ସମସ୍ତଙ୍କର ଅଗ୍ରଗଣ୍ୟ ବୋଲି ଗଣିତ ହୁଅନ୍ତି । ସାର୍ବଭୌମ ଭଟ୍ଟାଚାର୍ଯ୍ୟ, ଗଦାଧର ଓ ସ୍ୱରୂପ ଆଦି ପାର୍ଷଦମାନଙ୍କର ଅତି ପ୍ରିୟ ।

**କଦାପି ମନ୍ଦିର ଦ୍ୱାରଂ ଦୈନ୍ୟେନ ନଃ ଜଗାମ ଯଃ ।**
**ସଦ୍‌ବନ୍ଦ୍ୟ ଚରଣଦ୍ୱନ୍ଦ ହରିଦାସଂ ନମାମ୍ୟହମ୍ ।୪୫।**

ଯିଏ ନିଜକୁ ନୀଚ ଅଧମ ମନେକରି ଦୈନ୍ୟ ଭାବ ଧାରଣ କରି କଦାପି ଶ୍ରୀମନ୍ଦିରର ସିଂହଦ୍ୱାରକୁ ଗମନ କରିନଥିଲେ, ସେହି ସାଧୁମାନଙ୍କର ପରମ ବନ୍ଦନୀୟ ଚରଣ ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ଜିହ୍ୱାଗ୍ରେ ଶ୍ରୀ ହରେ କୃଷ୍ଣ ମହାମନ୍ତ୍ରସ୍ୟ କୀର୍ତ୍ତନମ୍ ।**

**ହୃଦୟେ ଗୌର ପାଦାବ୍‌ଜଂ ହରିଦାସଂ ନମାମ୍ୟହମ୍ ।୪୬।**

ହୃଦୟରେ ଗୌରସୁନ୍ଦରଙ୍କର ଚରଣକମଳଧାରୀ ଏବଂ ଜିହ୍ୱାଗ୍ରେ ଶ୍ରୀ ହରେକୃଷ୍ଣ ମହାମନ୍ତ୍ରର କୀର୍ତ୍ତନକାରୀ ହରିଦାସ ଠାକୁରଙ୍କୁ ପ୍ରଣାମ କରୁଅଛି ।

**ବିକୃତଂ ରାଧିକା ପ୍ରେମ୍ଣା ଜଗନ୍ନାଥଂ ବଭୂବୟଃ ।**

**ତତ୍ ପ୍ରେମାସ୍ୱାଦନାର୍ଥନ୍ତୁ ଗୌରଚନ୍ଦ୍ର ବଭୂବସଃ ।୪୭।**

ଶ୍ରୀମତୀ ରାଧାରାଣୀଙ୍କର ପ୍ରେମରେ ବିକୃତ ହୋଇ ଯେଉଁ ଶ୍ରୀ ନନ୍ଦନନ୍ଦନ ହରି ଜଗନ୍ନାଥରୂପେ ବିକୃତ ହୋଇଛନ୍ତି । ସିଏ ହିଁ ରାଧାରାଣୀଙ୍କର ପ୍ରେମ ଓ ଶ୍ରୀଜଗନ୍ନାଥଙ୍କୁ ଆସ୍ୱାଦନ କରିବାପାଇଁ ଗୌରାଙ୍ଗରୂପ ଧାରଣ କରିଛନ୍ତି ।

**ବୃନ୍ଦାବନ ରସାସ୍ୱାଦୀ ଜଗନ୍ନାଥ ମହାପ୍ରଭୁଃ ।**

**ଜଗନ୍ନାଥ ରସାସ୍ୱାଦୀ ଶ୍ରୀଗୌରାଙ୍ଗ ମହାପ୍ରଭୁଃ ।୪୮।**

ବୃନ୍ଦାବନ ରସାସ୍ୱାଦନକାରୀ ରାଧାଲିଙ୍ଗିତ ବିଗ୍ରହ ଶ୍ରୀମନ୍ ଜଗନ୍ନାଥ ମହାପ୍ରଭୁ ଏବଂ ଜଗନ୍ନାଥ ରସ ଆସ୍ୱାଦନକାରୀ ହେଉଛନ୍ତି ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁ ।

**ଅନ୍ୟୋଽନ୍ୟ ଦର୍ଶନେନ ତୁ ହ୍ୟନ୍ୟୋଽନ୍ୟସ୍ୟ ସୁଖାବହମ୍ ।**

**ଦ୍ୱୟୋଃ ସୁଖ ପ୍ରଦାତାରଂ ହରିଦାସଂ ନମାମ୍ୟହମ୍ ।୪୯।**

ଶ୍ରୀଜଗନ୍ନାଥ ଏବଂ ପ୍ରଭୁ ଗୌରସୁନ୍ଦର ଉଭୟେ ଉଭୟଙ୍କୁ ଦର୍ଶନ କରି ଉଭୟଙ୍କର ସୁଖ ହୋଇଥାଏ । ଏହି ଉଭୟକୁ ସୁଖ ପ୍ରଦାନକାରୀ ହରିଦାସଙ୍କୁ ମୁଁ ପ୍ରଣାମ କରୁଅଛି ।

**ବ୍ରହ୍ମଚତୁଷ୍ଟନାନ୍ତୁ ବିହାର ସଦନଂ ପୁରୀମ୍**

**ବିହାର ସଦନଂ ଯସ୍ୟ ହରିଦାସଂ ନମାମି ତମ୍ ।୫୦।**

ଚାରି ପ୍ରକାର ବ୍ରହ୍ମ – ୧) ଅଚଳ ବ୍ରହ୍ମ, ୨) ସଚଳବ୍ରହ୍ମ, ୩) ଅନ୍ନବ୍ରହ୍ମ, ଏବଂ ୪) ନାମବ୍ରହ୍ମଙ୍କର ବିହାରଭୂମି ହେଉଛି ଏହି ଶ୍ରୀକ୍ଷେତ୍ର ପୁରୀ । ଏହି ପୁରୀ ଧାମ ଯାହାର ବିହାର ଭୂମି ସେହି ହରିଦାସ ଠାକୁରଙ୍କୁ ମୁଁ ପ୍ରଣାମ କରୁଅଛି ।

**ଦାରୁବ୍ରହ୍ମ ଜଗନ୍ନାଥଂ ସଚଳଂ ଗୌର ସୁନ୍ଦରମ୍ ।**

**ବ୍ରହ୍ମମହା ପ୍ରସାଦନ୍ତୁ ନୀଳାଚଳଂ ନମାମି ତମ୍ ।୫୧।**

ଦାରୁବ୍ରହ୍ମ ଜଗନ୍ନାଥ ଅଚଳ, ସଚଳ ବ୍ରହ୍ମ ଗୌରସୁନ୍ଦର ଏବଂ ମହାପ୍ରସାଦ ଅନ୍ନବ୍ରହ୍ମ ଯେଉଁଠାରେ ସୁଲଭ ସେହି ନୀଳାଚଳକୁ ନମସ୍କାର କରୁଅଛି ।

**ହରିଦାସ ମୁଖୋଦ୍‌ଗୀର୍ଣ୍ଣଂ ହରେକୃଷ୍ଣାତ୍ମକଂ ମନ୍ତ୍ରମ୍ ।**

**ଶବ୍ଦବ୍ରହ୍ମ ସ୍ୱରୂପେଣ ପୁନାତି ଭୁବନ ତ୍ରୟମ୍ ।୫୨।**

ହରିଦାସ ଠାକୁରଙ୍କ ମୁଖନିସୃତ ହରେକୃଷ୍ଣାତ୍ମକ ମନ୍ତ୍ର ଶବ୍ଦ ବ୍ରହ୍ମ ସ୍ୱରୂପରେ ତ୍ରିଭୁବନକୁ ପାବନ କରୁଅଛି ।

**ରସାତ୍ମକଂ ପରଂବ୍ରହ୍ମ ''ରସୋ ବୈ ସଃ'' ପ୍ରମାଣ ତଃ ।**

**ସ ଏବତ୍ତୁ ରସାସ୍ୱାଦୀ ଶ୍ରୀଗୌରାଙ୍ଗ ମହାପ୍ରଭୁଃ ।୫୩।**

''ରସୋ ବୈ ସଃ'' ପ୍ରମାଣ ଦ୍ୱାରା ପ୍ରମାଣିତ ରସସ୍ୱରୂପ ପରମବ୍ରହ୍ମ ହିଁ ବର୍ତ୍ତମାନ ବୃନ୍ଦାବନୀୟ ରସ ଆସ୍ୱାଦନ କରିବାପାଇଁ ଶ୍ରୀ ଗୌରାଙ୍ଗ ମହାପ୍ରଭୁ ହୋଇଛନ୍ତି ।

**ରସରୂପଂ ପରଂବ୍ରହ୍ମ ଶ୍ରୀଚୈତନ୍ୟ ମହାପ୍ରଭୁମ୍ ।**

**ତଦାସ୍ୱାଦନ ପାରଗଂ ହରିଦାସଂ ନମାମ୍ୟହମ୍ ।୫୪।**

ସେହି ରସସ୍ୱରୂପ ପରଂବ୍ରହ୍ମ ହେଉଛନ୍ତି ଶ୍ରୀ ଗୌରାଙ୍ଗ ମହାପ୍ରଭୁ, ଆସ୍ୱାଦନ କରିବାପାଇଁ କୌଶଳି ସେହି ହରିଦାସଙ୍କୁ ମୁଁ ନମସ୍କାର କରୁଅଛି ।

**ଦୃଷ୍ଟ୍ୱା ପ୍ରିୟତମଂ ଭକ୍ତଂ ତପନ ତାପ ତାପିତମ୍ ।**

**ସନ୍ତପ୍ତ ହୃଦୟୋଽଭବତ୍ ଭଗବାନ୍ ଭକ୍ତ ଭକ୍ତିମାନ୍ ।୫୫।**

ସୂର୍ଯ୍ୟ ତାପରେ ତାପିତ ହେଉଥିବା ପ୍ରିୟତମ ଭକ୍ତଙ୍କୁ ଦେଖି ଭକ୍ତ ଭକ୍ତିମାନ୍ ଭଗବାନ୍ ଗୌରାଙ୍ଗସୁନ୍ଦର ସନ୍ତପ୍ତ ହୃଦୟ ହୋଇଯାଇଥିଲେ ।

**ଅପାର କରୁଣା ସିନ୍ଧୁଃ ଶ୍ରୀ ଗୌରାଙ୍ଗ ମହାପ୍ରଭୁଃ**
**ବକୁଳ ଦନ୍ତକାଷ୍ଠେନ ସଦ୍ୟୋବୃକ୍ଷ ମଚୀକରୋତ୍ ।୫୬।**

ଅପାର କରୁଣାସିନ୍ଧୁ ଶ୍ରୀଗୌରାଙ୍ଗ ମହାପ୍ରଭୁ ଜଗନ୍ନାଥଙ୍କର ପ୍ରସାଦି ବକୁଳ ଦନ୍ତକାଷ୍ଠ ଆରୋପଣ କରି ସଙ୍ଗେ ସଙ୍ଗେ ବିରାଟକାୟ ବୃକ୍ଷରେ ପରିଣତ କରିଦେଇଥିଲେ ।

**ସିଦ୍ଧବକୁଳ ନାମ୍ନାତୁ ଖ୍ୟାତୋଽଭୂତ୍ ଭୁବନ ତ୍ରୟେ ।**
**ଦର୍ଶନାତ୍ ସ୍ପର୍ଶନାତ୍ ସଦ୍ୟୋ ଭକ୍ତିରୁତ୍ପାଦ୍ୟତେ ନୃଣାମ୍ ।୫୭।**

ତାହା ଏହି ତ୍ରିଭୁବନରେ ସିଦ୍ଧବକୁଳ ନାମରେ ଖ୍ୟାତି ଲାଭ କରି ଅଛି, ଦର୍ଶନ ଓ ସ୍ପର୍ଶ କରିବାଦ୍ୱାରା ମନୁଷ୍ୟମାନଙ୍କର ଭଗବଦ୍ ଭକ୍ତି ସଙ୍ଗେ ସଙ୍ଗେ ଜାତ ହୋଇଥାଏ ।

**ସିଦ୍ଧ ବାଣୀର ସାର୍ଦ୍ଧେନ ଶ୍ରୀଚୈତନ୍ୟଂ ମହାପ୍ରଭୁମ୍ ।**
**ସ୍ୱରୂପାଦି ଗଣୈ ର୍ଯୁକ୍ତଂ ହରିଦାସଂ ନମାମ୍ୟହମ୍ ।୫୮।**

ସେହି ସିଦ୍ଧବକୁଳ ସହିତ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କୁ ଏବଂ ସ୍ୱରୂପ ଆଦି ଗଣଙ୍କ ସହିତ ଯୁକ୍ତ ରହିଥିବା ହରିଦାସ ଠାକୁରଙ୍କୁ ନମସ୍କାର କରୁଅଛି ।

**ନୀଳଭୂଧର କନ୍ଦର ବାସିନଂ ବ୍ରଜନାୟକମ୍ ।**
**ଖଗପତି ସମୀପେତୁ ବିଲୋକ୍ୟ ଗୌର ସୁନ୍ଦରଃ ।୫୯।**

ଶ୍ରୀଗୌରାଙ୍ଗ ମହାପ୍ରଭୁ ନୀଳପର୍ବତର କନ୍ଦରରେ ବାସକାରି ବ୍ରଜରାଜ ନାୟକଙ୍କୁ ପକ୍ଷୀରାଜ ଗରୁଡ଼ସ୍ତମ୍ଭ ନିକଟରୁ ଦର୍ଶନ କରନ୍ତି ।

**ଦିବ୍ୟ ସାତ୍ତ୍ୱିକ ଭାବୈଶ୍ଚ ଭୂଷିତଃ ଗୌରବିଗ୍ରହଃ ।**

**ତତ୍ ଦର୍ଶନ ସମୁତ୍କଣ୍ଠୋ ଭବତି ଗୌର ଶ୍ରୀହରିଃ ।୬୦।**

ଶ୍ରୀଗୌରବିଗ୍ରହ ଗୌରହରି ଦିବ୍ୟ ଦିବ୍ୟ ସାତ୍ୱିକ ଭାବାବଳିଦ୍ୱାରା ବିଭୁଷିତ ହୋଇ ହରିଦାସ ଠାକୁରଙ୍କୁ ଦର୍ଶନ କରିବା ପାଇଁ ସମୁତ୍କଣ୍ଠିତ ହୋଇଉଠନ୍ତି ।

**ସତ୍ୱରଂ ତୁ ସମାଗତ୍ୟ ଶ୍ରୀସିଦ୍ଧ ବକୁଳଂ ତଦା ।**
**ତୈସ୍ତୁ ସାତ୍ତ୍ୱିକ ଭାବୈଷ୍ଟ ଭୂଷିତଂ ତଂ ବିଲୋକ୍ୟତି ।୬୧।**

ସେତିକିବେଳେ ଅତି ତ୍ୱରାନ୍ୱିତ ହୋଇ ଶ୍ରୀ ସିଦ୍ଧବକୁଳ ନିକଟକୁ ଆସନ୍ତି ଏବଂ ସେ ସାତ୍ୱିକାଦି ଭାବ ବିଭୂଷିତ ହୋଇ ହରିଦାସ ଠାକୁରଙ୍କୁ ଦର୍ଶନ କରନ୍ତି ।

**ଯଃ ସ୍ୱୟଂ ଦର୍ପଣୋଽଭବତ୍ ଶ୍ରୀଚୈତନ୍ୟ ମହାପ୍ରଭୋଃ ।**
**ସ୍ୱ ସ୍ୱ ଭାବ ବିଲୋକାର୍ଥଂ ହରିଦାସଂ ନମାମି ତମ୍ ।୬୨।**

ସ୍ୱ ସ୍ୱ (ନିଜ ନିଜ) ଭାବ ଦର୍ଶନ କରିବାପାଇଁ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କର ଯିଏ ଦର୍ପଣସ୍ୱରୂପ ଅଟନ୍ତି, ସେହି ହରିଦାସ ଠାକୁରଙ୍କୁ ନମସ୍କାର କରୁଅଛି ।

**ସ୍ୱସୁଖେନ ତୁ ମାହାତ୍ମ୍ୟଂ ସ୍ୱୟଂ ଗୌର ପ୍ରଭୁର୍ମହାନ୍ ।**
**ଭକ୍ତାନାଂ ସବିଧେ ଜଗୌ ହରିଦାସଂ ନମାମି ତମ୍ ।୬୩।**

ସ୍ୱୟଂ ଗୌରାଙ୍ଗ ମହାପ୍ରଭୁ ନିଜ ସୁଖରେ ଆତ୍ମବିଭୋର ହୋଇ ଭକ୍ତଗଣଙ୍କ ନିକଟରେ ଯାହାର ମାହାତ୍ମ୍ୟ ଗାନ କରିଥିଲେ । ସେହି ହରିଦାସ ଠାକୁରଙ୍କୁ ମୁଁ ନମସ୍କାର କରୁଅଛି ।

**ଅପତିତଂ ଲକ୍ଷତ୍ରୟଂ ଦ୍ୱାତ୍ରିଂଶଦକ୍ଷରାତ୍ମକମ୍ ।**
**ମହାମନ୍ତ୍ରଂ ଜଗୌ ନିତ୍ୟଂ ହରିଦାସଂ ନମାମି ତମ୍ ।୬୪।**

ଯିଏ ଅପତିତ ଭାବରେ ତିନିଲକ୍ଷ ସଂଖ୍ୟକ, ବତ୍ରିଶ ଅକ୍ଷରାତ୍ମକ

ମହାମନ୍ତ୍ର ନିତ୍ୟ ଗାନ ବା ଜପ କରୁଥିଲେ, ସେହି ହରିଦାସ ଠାକୁରଙ୍କୁ ମୁଁ ନମସ୍କାର କରୁଅଛି ।

**ମହାପ୍ରଭୋଃ ପ୍ରସାଦାନ୍ନଂ ଗୌରାଙ୍ଗ ପ୍ରିୟପାର୍ଷଦଃ ।**
**ପ୍ରାପୟତି ତୁ ଗୋବିନ୍ଦଃ ହରିଦାସଂ ନମାମି ତମ୍ ।୬୫।**

ଗୌରାଙ୍ଗ ପ୍ରିୟପାର୍ଷଦ ଶ୍ରୀଗୋବିନ୍ଦ ଯାହା ସକାଶେ ମହାପ୍ରଭୁଙ୍କର ପ୍ରସାଦ ଅନ୍ନ ପହଞ୍ଚାଇ ଥାନ୍ତି ସେହି ହରିଦାସ ଠାକୁରଙ୍କୁ ମୁଁ ନମସ୍କାର କରୁଅଛି ।

**ଜଗଦାନନ୍ଦ ହସ୍ତେନ ଶାନ୍ତିପୁର ଶିରୋମଣିଃ ।**
**ପ୍ରହେଳୀଂ ପ୍ରେଷୟାମାସ ଶ୍ରୀଚୈତନ୍ୟ ସକାଶେ ତୁ ।୬୬।**

ଶାନ୍ତିପୁର ଶିରୋମଣି ଶ୍ରୀ ଅଦ୍ୱୈତାଚାର୍ଯ୍ୟ ପଣ୍ଡିତ ଜଗଦାନନ୍ଦଙ୍କ ହାତରେ ପ୍ରହେଳୀ ମହାପ୍ରଭୁଙ୍କ ସକାଶେ ପଠାଇ ଥିଲେ ।

**ଶ୍ରୁତ୍ୱା ପ୍ରହେଳିକାଂ ଗୌର ଶ୍ରୀଅଦ୍ୱୈତ ମହେଶ୍ୱରାତ୍ ।**
**ବଭୁବୋଽନ୍ତର୍ମନା ଭୃଶଂ ବ୍ରହ୍ମଣୋଽପି ଚ ଦୁର୍ଜ୍ଞେୟମ୍ ।୬୭।**

ଦୁର୍ଜ୍ଞେୟ ବ୍ରହ୍ମ ହୋଇ ମଧ ଗୌରସୁନ୍ଦର ଅଦ୍ୱୈତାଚାର୍ଯ୍ୟଙ୍କଠାରୁ ପ୍ରହେଳିକା ଶ୍ରବଣ କରି ଅତିଶୀଘ୍ର ଅନ୍ତର୍ମନା ହୋଇଯାଇଥିଲେ ।

**ପାତନଂ ଲବଣାବ୍ଧୌଚ ଭିତ୍ତ୍ୱାଦୌ ମୁଖଘର୍ଷଣମ୍ ।**
**ପତନଂ ଚ ଗବାଂ ମଧ୍ୟେ ଶ୍ରୀ ସନ୍ୟାସି ଶିରୋମଣେଃ ।୬୮।**

ଶ୍ରୀ ସନ୍ୟାସି ଶିରୋମଣି କେତେବେଳେ ଲବଣ ସମୁଦ୍ରରେ ଯମୁନା ଭ୍ରମରେ ପତିତ ହୁଅନ୍ତି, କେତେବେଳେ ଗମ୍ଭିରାର କାନ୍ଥରେ ମୁଖ ଘର୍ଷଣ କରନ୍ତି ଓ କେତେବେଳେ ତୈଲଙ୍ଗ ଗାଭିଗଣଙ୍କ ମଝିରେ ପଡ଼ିରହନ୍ତି ।

**ଦିବ୍ୟୋନ୍ମାଦ ରସାସ୍ୱାଦଂ ରାଧିକାପ୍ରାୟ ଚେଷ୍ଟିତମ୍ ।**
**ମଧୁକର ସଂଲାପଞ୍ଚ ବିହାରଂ ଚଟକାଦିଷୁ ।୬୯।**

ରାଧାରାଣୀଙ୍କ ଭଳି ପ୍ରିୟ ଚେଷ୍ଟା, ଦିବ୍ୟ ଉନ୍ମାଦ ଦଶାରେ ରସ

ଆସ୍ୱାଦନ, ଭ୍ରମର ଗୀତ ଆଦି ଆସ୍ୱାଦନ ଏବଂ ଚଟକ ପର୍ବତକୁ ଗୋବର୍ଦ୍ଧନ ଜ୍ଞାନରେ ବିହାର ଆଦି ।

**ଦୃଷ୍ଟ୍ୱା ତାଦୃଶ- ଚେଷ୍ଟିତଂ ଚୈତନ୍ୟସ୍ୟ ମହାପ୍ରଭୋଃ ।**
**ମନସା ଚିନ୍ତୟାମାସ ହରିଦାସୋ ମହାମତିଃ ।୭୦।**

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ଏହିଭଳି ଚେଷ୍ଟା ଦର୍ଶନ କରି ମହାମତି ହରିଦାସ ଚିନ୍ତା କରିବାକୁ ଲାଗିଲେ ।

**ସ୍ୱଧାମଂ ଯାତ୍ୟସୌ ଦେବଃ ଶ୍ରୀଗୌରାଙ୍ଗ ମହାପ୍ରଭୁଃ ।**
**ନଦ୍ରଷ୍ଟବ୍ୟଂ ମୟା ସା ଚ ଲୀଳା କଦାପି ଚକ୍ଷୁଷା ।୭୧।**

ଏହି ଗୌରାଙ୍ଗ ମହାପ୍ରଭୁ ନିଶ୍ଚୟ ସ୍ୱଧାନ ଗମନ କରିବେ । ମୋ ଦ୍ୱାରା ସେହି ଲୀଳା ନେତ୍ରରେ ଦର୍ଶନ କରି ହେବ ନାହିଁ ।

**ମହାପ୍ରସାଦ ସାର୍ଦ୍ଧେନ ଗୋବିନ୍ଦେତୁ ସମାଗତେ ।**
**ମନ୍ଦଂ ମନ୍ଦଂ ଚକାରାସୌ ନାମ ସଂକୀର୍ତ୍ତନଂ ତଦା ।୭୨।**

ମହାପ୍ରସାଦ ସାଥିରେ ନେଇ ଗୋବିନ୍ଦ ଆଗମନ କରିବା ସମୟରେ ଏହି ହରିଦାସ ଅତି ଧିରେ ଧିରେ ହରିନାମ ସଂକୀର୍ତ୍ତନ କରୁଥିଲେ ।

**ଗୋବିନ୍ଦେନ ତଦା ପୃଷ୍ଟଂ ସୁସ୍ଥୋସି ଭୋ ମହାମତେ**
**କଥୟାମସ ବୈ ତଦା ହରିଦାସୋ ମହାମତିଃ ।୭୩।**

ତାହା ଦେଖି ଗୋବିନ୍ଦ ପଚାରିଥିଲେ – ହେ ମହାମତି ! ସୁସ୍ଥ ଅଛନ୍ତି ତ ? ସେତେବେଳେ ମହାମତି ହରିଦାସ କହିଥିଲେ-

**ସୁସ୍ଥୋଽସ୍ମି ଭୋଃ ଶରୀରେଣ ଚିତ୍ତସ୍ୟ ସ୍ଥିରତା ନହି।**
**ଅତୋ ମୟାନ ପାର୍ଯ୍ୟତେ ସ୍ୱୀକର୍ତ୍ତୁଂ ଶ୍ରୀପ୍ରସାଦକମ୍ ।୭୪।**

ହେ ଗୋବିନ୍ଦ ! ଶରୀର ଦ୍ୱାରା ମୁଁ ସୁସ୍ଥ ଅଛି କିନ୍ତୁ ଚିତ୍ତ ଅସୁସ୍ଥ ସ୍ଥିରତା ନାହିଁ । ଏଣୁ ମୁଁ ଶ୍ରୀମହାପ୍ରସାଦ ସ୍ୱୀକାର କରିପାରିବି ନାହିଁ ।

**ପରେଦ୍ୟୁଃ କରୁଣାପୂର୍ଣ୍ଣ ଶ୍ରୀଗୌରାଙ୍ଗ ମହାପ୍ରଭୁଃ ।**

**ସିଦ୍ଧବକୁଳ ମାଗତ୍ୟ ଦୃଷ୍ଟ ଭକ୍ତ ସୁଧାକରମ୍ ।୭୫।**

ପରଦିବସ କରୁଣାନିଧି ଶ୍ରୀଗୌରାଙ୍ଗ ମହାପ୍ରଭୁ ସିଦ୍ଧବକୁଳ ଆସି ଭକ୍ତ ସୁଧାକର ହରିଦାସଙ୍କୁ ଦେଖିଲେ ।

**ଭକ୍ତରାଟ୍ ଯାଚୟାମାସ ଶଚୀସୁତ ପାଦାବ୍ଜୟୋଃ ।**
**ଲୋକଂ ତ୍ୟକ୍ଷତି ହେ ଦେବ ସ୍ୱଧାମଂ ପ୍ରୟାସ୍ୟତି ।୭୬।**

ଏହି ଭକ୍ତରାଜ ଶଚୀସୁତଙ୍କର ଚରଣ କମଳରେ ପ୍ରାର୍ଥନା କରିଥିଲେ - ହେ ଦେବ ! ଆପଣ ଏହି ମର୍ତ୍ତ୍ୟଲୋକ ତ୍ୟାଗକରି ନିଶ୍ଚୟ ସ୍ୱଧାମକୁ ଗମନ କରିବେ ।

**ସ ଲୀଲା ଭାଗ୍ୟ ହୀନାୟ ଭକ୍ତାଭାସାୟ ଭୋଃ ପ୍ରଭୋ**
**ମା ଦର୍ଶୟତୁ ଦୀନାୟ ଭକ୍ତାନୁଗ୍ରହ କାତର ! ।୭୭।**

ହେ ପ୍ରଭୋ ! ହେ ଭକ୍ତାନୁଗ୍ରହ କାତର ! ସେହି ଲୀଳା ଏହି ଭାଗ୍ୟହୀନ ଅତିଦୀନ ଭକ୍ତାଭାସକୁ ଦେଖାଇବେ ନାହିଁ ।

**ମମୈଚ୍ଛା ବାସନାହ୍ୟସ୍ତି ଦୃଷ୍ଟ୍ୱାତବ ମୁଖାମ୍ବୁଜମ୍ ।**
**ହୃଦି ସଂନ୍ୟସ୍ୟ ତେ ଦେବ ଭକ୍ତି ଲଭ୍ୟଂ ପଦାମ୍ବୁଜମ୍ ।୭୮।**

ହେ ଦେବ ! ମୋର ଗୋଟିଏ ବାସନା ନିଶ୍ଚୟ ହୋଇଅଛି । ତାହା ହେଉଛି ଆପଣଙ୍କର ମୁଖକମଳକୁ ଦର୍ଶନ କରି, ହୃଦୟରେ ଆପଣଙ୍କର ଭକ୍ତିଲଭ୍ୟ ଚରଣ କମଳ ଯୁଗଳକୁ (ସ୍ଥାପନ) ଧାରଣ କରିଥିବି ।

**ଜିହ୍ୱାୟାନ୍ତୁ ରସାତ୍ମକମ୍ ମଙ୍ଗଳାନାଞ୍ଚ ମଙ୍ଗଳମ୍ ।**
**ମଧୁକରଞ୍ଚ ତବାଭିନ୍ନଂ ଶ୍ରୀନାମଂ ପରିନର୍ତ୍ତତୁ ।୭୯।**

ମୋର ଜିହ୍ୱାରେ ସର୍ବରସସ୍ୱରୂପ, ସମସ୍ତ ମଙ୍ଗଳମାନଙ୍କର ମଙ୍ଗଳ ଆପଣଙ୍କର ଅଭିନ୍ନ ଶ୍ରୀନାମ ଭ୍ରମର ଭଳି ନୃତ୍ୟ କରୁଥାଉ - ସଦାସର୍ବଦା ନାମ କୀର୍ତ୍ତନ କରୁଥିବି ।

**ଏବଂ ଭାବେନ ମେ ପ୍ରାଣାଃ ଯାନ୍ତୁ ଦେବ! ତବାଗ୍ରତଃ ।**

**ଏଷାମେ ବାସନା ପ୍ରଭୋ! କରୁଣା ବରୁଣାଳୟ ।୮୦।**

ହେ ଦେବ ! ଆପଣଙ୍କର ସମ୍ମୁଖରେ ଏହିଭଳି ଭାବରେ ମୋର ପ୍ରାଣ ବାୟୁ ଗମନ କରୁ । ହେ କରୁଣା ବରୁଣାଳୟ ! ହେ ପ୍ରଭୁ ! ଏହା ହିଁ ମୋର ବାସନା ।

**ଆନନ୍ଦ ଘନ ମୂର୍ତ୍ତି ଶ୍ରୀ କୃଷ୍ଣ ଚୈତନ୍ୟ ବିଗ୍ରହଃ ।**
**ଭକ୍ତାଭିଳାଷ ପୂର୍ଣ୍ଣକୃତ୍ ପରଂବ୍ରହ୍ମ ନରାକୃତିଃ ।୮୧।**

''ଆନନ୍ଦମୟ ଅଭ୍ୟାସାତ୍'' ଇତ୍ୟାଦି ପ୍ରମାଣଦ୍ୱାରା ପ୍ରମାଣିତ ସମସ୍ତ ଆନନ୍ଦ ରସଙ୍କର ଘନିଭୂତ ବିଗ୍ରହ ଶ୍ରୀକୃଷ୍ଣଚୈତନ୍ୟ ରସବିଗ୍ରହ- ଭକ୍ତାଭିଳାଷ ପୂର୍ଣ୍ଣକାରୀ ପରଂବ୍ରହ୍ମ ନରାକୃତି ଗୌରାଙ୍ଗ ମହାପ୍ରଭୁ ।

**''ଅହଂ ଭକ୍ତ'' ପରାଧୀନଃ ଇତି ଶ୍ରୀମୁଖ ବାକ୍ୟତଃ**
**ସର୍ବଂ ସ୍ୱୀକୃତବାନ୍ ଦେବଃ ଶ୍ରୀଚୈତନ୍ୟ ମହାପ୍ରଭୁଃ ।୮୨।**

''ଅହଂ ଭକ୍ତ ପରାଧୀନଃ'' - ''ମୁଁ ଭକ୍ତର ଅଧୀନ'' ଏହିଭଳି ତାଙ୍କର ଶ୍ରୀମୁଖ ବାଣି ହେତୁ ଦେବ ଶ୍ରୀଚୈତନ୍ୟମହାପ୍ରଭୁ ହରିଦାସଙ୍କର ସମସ୍ତ ପ୍ରାର୍ଥନା ସ୍ୱୀକାର କରିଥିଲେ ।

**ପ୍ରାତରେବ ସମାଗମ୍ୟ ସ୍ୱପାର୍ଷଦଗଣୈଃ ସହ ।**
**ସିନ୍ଧବକୁଳ ସନ୍ନିଧୌ ଶୟାନଂ ତଂ ଦଦର୍ଶହ ।୮୩।**

ଶ୍ରୀ ଗୌରାଙ୍ଗ ମହାପ୍ରଭୁ ପ୍ରାତଃ କାଳରୁ ସ୍ୱପାର୍ଷଦଗଣଙ୍କ ସହିତ ସିନ୍ଧବକୁଳ ନିକଟକୁ ଆସି, ସେହି ହରିଦାସ ଠାକୁରଙ୍କୁ ଶୋଇ ରହିଥିବା ଦେଖିଥିଲେ ।

**ପ୍ରାର୍ଥିତବାନ୍ ଯଥା ଭକ୍ତଃ ତଥୈବାଚରିତ ପ୍ରଭୁଃ ।**
**ବକ୍ଷସି ହରିଦାସସ୍ୟ ପାଦପଦ୍ମ ନ୍ୟଧାତ୍ ସ୍ୱୟଂ ।୮୪।**

ଯେଉଁ ପ୍ରକାର ଭକ୍ତ ପ୍ରାର୍ଥନା କରିଥିଲେ, ସେହି ପ୍ରକାର ହିଁ ପ୍ରଭୁ

ଆଚରଣ କରିଥିଲେ । ହରିଦାସଙ୍କର ବକ୍ଷସ୍ଥଳ ଉପରେ ସ୍ୱଚରଣ କମଳ ସ୍ୱୟଂ ସ୍ଥାପନ କରିଥିଲେ ।

**ଦୃଷ୍ଟ୍ୱା ମୁଖ ସରୋରୁହଂ ବକ୍ଷସି ତୁ ଜଳେରୁହମ୍ ।**

**ବଦନେ ତୁ ହରେର୍ନାମ ସମୁଚ୍ଚାର୍ଯ୍ୟ ଜହୌ ତନୁମ୍ ।୮୫।**

ନୟନ ଯୁଗଳରେ ଶ୍ରୀମୁଖକମଳ ଦର୍ଶନ କରି ବକ୍ଷସ୍ଥଳରେ ଚରଣକମଳ ଧାରଣ କରି ମୁଖରେ ହରିନାମ ଉଚ୍ଚାରଣ କରି କରି ହରିଦାସ ଶରୀର ତ୍ୟାଗ କରିଥିଲେ ।

**ଜୟ ଶ୍ରୀକୃଷ୍ଣ ଚୈତନ୍ୟଂ ହରିଦାସ କୃପାକୂଳମ୍**

**ଏବଂ ଶବ୍ଦଂ ସମୁଚ୍ଚାର୍ଯ୍ୟ ନିରୁଦ୍ଧଂ ଲୋଚନ ଦ୍ୱୟମ୍ ।୮୬।**

ହରିଦାସ ପ୍ରତି କୃପା କରିବାପାଇଁ ଆକୁଳ ଶ୍ରୀ ଚୈତନ୍ୟଙ୍କ ଜୟ ହେଉ । ଏହି ଶବ୍ଦ ଉଚ୍ଚାରଣ କରି ଦୁଇ ନେତ୍ର ମୁଦ୍ରିତ କରିଦେଇଥିଲେ ।

**''ହରିଂ ବଦ'' ସମୁଚ୍ଚାର୍ଯ୍ୟ ସପାର୍ଷଦ ମହାପ୍ରଭୁଃ**

**ସ୍ୱରୂପାଦି ଗଣୈ ସାର୍ଦ୍ଧଂ ତଦଙ୍ଗନେ ନନର୍ତ୍ତହ ।୮୭।**

''ହରି ବୋଲ'' ''ହରି ବୋଲ'' ବୋଲି ସପାର୍ଷଦ ଗୌରାଙ୍ଗ ମହାପ୍ରଭୁ ସ୍ୱରୂପାଦି ଗଣଙ୍କ ସହ ସେହି ଅଙ୍ଗନରେ ନୃତ୍ୟ କରିଥିଲେ ।

**ନମାମି ହରିଦାସଂ ତଂ ଚୈତନ୍ୟ ତଞ୍ଚ ତତ୍ ପ୍ରଭୁମ୍**

**ସଂସ୍ଥିତାମପି ଯନ୍ମୂର୍ତ୍ତିଃ ସ୍ୱାଙ୍କେ କୃତ୍ୱା ନନର୍ତ୍ତ ଯଃ ।୮୮।**

**(ଚୈ.ଚ ୩.୧୧.୧)**

ସେହି ହରିଦାସଙ୍କୁ ପ୍ରଣାମ କରୁଅଛି ଏବଂ ତାଙ୍କର ପ୍ରଭୁ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କୁ ମଧ୍ୟ ପ୍ରଣାମ କରୁଅଛି - ଯାହାର ମୂର୍ତ୍ତି କୋଳରେ ଧାରଣ କରି ସ୍ୱୟଂ ନୃତ୍ୟ କରିଥିଲେ । ଚୈ:ଚ-୩।୧୧।୧

**ଅଥ ବିମାନ ମାରୋପ୍ୟ ନାମ ସଂକୀର୍ତ୍ତନୈଃ ସହ**

**ସାଗର ତୀର ମାନୀତଂ ଗୌରେଣ ପାର୍ଷଦୈଷ୍ଣ ତମ୍ ।୮୯।**

ଶ୍ରୀ ଗୌରାଙ୍ଗ ମହାପ୍ରଭୁ ପାର୍ଷଦଗଣଙ୍କ ସହ ହରିଦାସଙ୍କୁ ବିମାନରେ ଆରୋପିତ କରି ମହାସଂକୀର୍ତ୍ତନ ସହିତ ସାଗରତୀର ସ୍ୱର୍ଗଦ୍ୱାରକୁ ଆଣିଲେ ।

**ସ୍ନାପୟିତ୍ୱା ପୟୋନିଧେଃ ସବିଧେ ପୂତ ବାରିଣା**
**ବେଳାଭୂମୌତୁ ଚୈତନ୍ୟ ରଚୟାମାସ ପୀଠକମ୍ ।୯୦।**

ପୟୋନିଧି, ସମୁଦ୍ରଙ୍କର ପବିତ୍ର ଜଳରେ ବିଧିପୂର୍ବକ ସ୍ନାନ କରାଇ, ବେଳାଭୂମିରେ ସମାଧି ଦେଇ ବେଦି ନିର୍ମାଣ କରିଥିଲେ ।

**କୃତ୍ୱା ସମାଧିପୀଠକଂ ପରିକ୍ରମା ଗଣୈଃ ସହ**
**ସିଂହଦ୍ୱାରଂ ସମାଗମ୍ୟ ପ୍ରସାଦ ବ୍ୟବସାୟିନମ୍ ।୯୧।**

ସେହି ସମାଧି ପୀଠକୁ ଗଣସହ ପରିକ୍ରମା କରିଥିଲେ ଏବଂ ସିଂହଦ୍ୱାରକୁ ଆସି ପ୍ରସାଦ ବ୍ୟବସାୟୀମାନଙ୍କ ନିକଟକୁ ଯାଇଥିଲେ ।

**ପ୍ରସାଦଂ ଯାଚୟାମାସ ସ୍ୱୟଂ ଶ୍ରୀମନ୍ ମହାପ୍ରଭୁଃ**
**ପ୍ରିୟ ଶ୍ରୀ ହରିଦାସସ୍ୟ ପ୍ରଚାରାର୍ଥଂ ମହୋତ୍ସବମ୍ ।୯୨।**

ସ୍ୱୟଂ ଶ୍ରୀମନ୍ ମହାପ୍ରଭୁ ପ୍ରିୟ ହରିଦାସଙ୍କର ପ୍ରଚାର ଓ ତାଙ୍କର ଉତ୍ସବ ପାଇଁ ପ୍ରସାଦ ଭିକ୍ଷା କରିଥିଲେ ।

**ତତୋ ମିଶ୍ର ଗୃହୋଦ୍ୟାନେ ସ୍ୱରୂପାଦି ଗଣୈଃ ସହ**
**ପ୍ରସାଦଂ ଭୋଜୟାମାସ ବୈଷ୍ଣବାନ୍ ପ୍ରିୟ ପାର୍ଷଦାନ୍ ।୯୩।**

ତାହାର ପରେ କାଶିମିଶ୍ରଙ୍କର ଗୃହ ଅଙ୍ଗନରେ ସ୍ୱରୂପାଦି ଗଣଙ୍କ ସହ ପ୍ରିୟ ବୈଷ୍ଣବ ଓ ପାର୍ଷଦମାନଙ୍କୁ ପ୍ରସାଦ ଭୋଜନ କରାଇଥିଲେ ।

**ସମୁତ୍‌ଥାପ୍ୟ ତୁ ବୈ ବାହୂ ଶ୍ରୀ ଗୌରାଙ୍ଗ ମହାପ୍ରଭୁଃ**
**ଇଦଂବର ଦଦୌ ସାକ୍ଷାତ୍ ଶ୍ରୀମଦ୍ ହରି ଦାସେଶ୍ୱରଃ ।୯୪।**

ଶ୍ରୀମଦ୍ ହରିଦାସଙ୍କ ଈଶ୍ୱର ଶ୍ରୀଗୌରାଙ୍ଗ ମହାପ୍ରଭୁ ଦୁଇ ବାହୁ ଟେକି ସାକ୍ଷାତ୍ ଏହି ବର ପ୍ରଦାନ କରିଥିଲେ ।

**ସିଦ୍ଧବକୁଲତୋ ଯେ ବୈ ମହାକୀର୍ତ୍ତନେନଚ ।**
**ହରିଦାସସ୍ୟ ଯାନେନ ଗାୟନ୍ନାମଂ ଜଗାମ ହ ।୯୫।**

ସିଦ୍ଧ ବକୁଳଠାରୁ ହରିଦାସଙ୍କର ବିମାନ ସହିତ ମହାସଂକୀର୍ତ୍ତନରେ ନାମ ଗାନ କରି ଯେଉଁମାନେ ଗମନ କରିଛନ୍ତି ।

**ଯେ ଚ ଶ୍ରୀହରିଦାସସ୍ୟ ସମାଧୌ ବାଲୁକାଂଦଦୌ**
**ଯେବା ମହୋତ୍ସବେ ତସ୍ୟ ପ୍ରସାଦଂ ଭକ୍ଷୟନ୍ତି ଚ ।୯୬।**

ଯେଉଁମାନେ ହରିଦାସଙ୍କର ସମାଧିରେ ବାଲୁକା ପ୍ରଦାନ କରିଛନ୍ତି ଓ ଯେଉଁମାନେ ମହୋତ୍ସବରେ ପ୍ରସାଦ ସେବନ କରିଛନ୍ତି ଓ କରାଇଛନ୍ତି ।

**କୃପାଂ ପ୍ରକୁରୁତାଂ ତେଭ୍ୟଃ ବ୍ରଜରାଜ କୁମାରକଃ ।**
**ପରାଭକ୍ତିଂ ପ୍ରଦାତୁ ଶ୍ରୀ ରାଧିକା ପ୍ରାଣବଲ୍ଲଭ ।୯୭।**

ବ୍ରଜରାଜ କୁମାର ସେମାନଙ୍କ ପ୍ରତି ଅବଶ୍ୟ କୃପା କରିବେ, ଶ୍ରୀ ରାଧିକାପ୍ରାଣବଲ୍ଲବ ତାଙ୍କୁ ପରା 'ଶ୍ରେଷ୍ଠ' ଭକ୍ତି ପ୍ରଦାନ କରିବେ ।

**ଦତ୍ତ୍ୱୈବଂ କରୁଣାସିନ୍ଧୁଃ ଶ୍ରୀଚୈତନ୍ୟ ମହାପ୍ରଭୁଃ।**
**ସ୍ୱଜନେଭ୍ୟୋ ମହାବରଂ ଯଯୌ ସ୍ୱଭବନଂ ପ୍ରତି।୯୮।**

କରୁଣାସିନ୍ଧୁ ଶ୍ରୀଚୈତନ୍ୟ ମହାପ୍ରଭୁ ଏହିଭଳି ଭକ୍ତମାନଙ୍କୁ ମହାବର ପ୍ରଦାନ କରି ନିଜ ନିବାସ ଗମ୍ଭୀରାକୁ ଗମନ କରିଥିଲେ ।

**ତଦାରଭ୍ୟ ଶ୍ରୀଚୈତନ୍ୟ ବଭୂବାନ୍ତର୍ମନାଭୃଶମ୍ ।**
**ରାମାନନ୍ଦ ସ୍ୱରୂପାଭ୍ୟାଂ ବୋଧତୋଽପି ନିରନ୍ତରମ୍ ।୯୯।**

ସେହି ଦିନଠାରୁ ରାମାନନ୍ଦ ଓ ସ୍ୱରୂପାଦି ଦ୍ୱାରା ବୋଧିତ ହୋଇ ମଧ ପ୍ରଗାଢ଼ ଅନ୍ତର୍ମନା ହୋଇଯାଇଥିଲେ ।

**ଜୟତି ଶ୍ରୀ ମହାପ୍ରଭୁଃ ତତ୍ ପ୍ରିୟୋ ହରିଦାସକଃ**
**ଗୌରାଙ୍ଗ ପ୍ରିୟ ସେବକଂ ହରିଦାସଂ ନମାମ୍ୟହମ୍ ।୧୦୦।**

ଶ୍ରୀ ଗୌରାଙ୍ଗ ମହାପ୍ରଭୁଙ୍କର ଜୟ ହେଉ ଏବଂ ତାଙ୍କର ପ୍ରିୟ ହରିଦାସଙ୍କର ଜୟ ହେଉ । ସେହି ଗୌରାଙ୍ଗ ପ୍ରିୟ ସେବକ ହରିଦାସଙ୍କୁ ମୁଁ ନମସ୍କାର କରୁଅଛି ।

**ଶ୍ରୀଗୌରାଙ୍ଗ ଗଣାଗ୍ରଗଣ୍ୟଂ ନାମନିଷ୍ଠା ପ୍ରକାଶକମ୍ ।**
**ଗୌର ମୁକୁର ରୂପଞ୍ଚ ହରିଦାସଂ ନାମମ୍ୟହମ୍ ।୧୦୧।**

ଶ୍ରୀ ଗୌରାଙ୍ଗଗଣଙ୍କର ଅଗ୍ରଗଣ୍ୟ ଶ୍ରୀନାମନିଷ୍ଠା ପ୍ରକାଶକ ଶ୍ରୀ ଗୌରସୁନ୍ଦରଙ୍କର ଭାବ ଦର୍ଶନର ଦର୍ପଣସ୍ୱରୂପ ହରିଦାସ ଠାକୁରଙ୍କୁ ନମସ୍କାର କରୁଅଛି ।

**ଇତି ଶ୍ରୀ ହରିଦାସସ୍ୟ ଶତକଂ ପୂଣ୍ୟଦାୟକମ୍**
**ବୈଷ୍ଣବାନା ପ୍ରିୟଙ୍କରଂ ପ୍ରେମଭକ୍ତି ପ୍ରଦାୟକମ୍ ।୧୦୨।**

ପୁଣ୍ୟପ୍ରଦ ବୈଷ୍ଣବମାନଙ୍କର ପ୍ରିୟକାରୀ ପ୍ରେମଭକ୍ତି ପ୍ରଦାୟକ ହରିଦାସ ଠାକୁରଙ୍କର ଶତକ ସଂପୂର୍ଣ୍ଣ ।

**ପୁତ୍ରାର୍ଥୀଲଭତେ ପୁତ୍ରଂ ଧନାର୍ଥୀ ଲଭତେ ଧନମ୍**
**ଯଦ୍ ଯନ୍ମନସି ବାଞ୍ଛତି ଲଭତେ ନାତ୍ର ସଂଶୟମ୍ ।୧୦୩।**

ଏହା ପାଠକଲେ ପୁତ୍ରାର୍ଥି ପୁତ୍ର ପ୍ରାପ୍ତ ହୁଏ, ଧନାର୍ଥି ଧନ ପାପ୍ତ ହେବ ଯାହା ଯାହା ମନରେ କାମନା କରିବ ତାହା ଅଂଶଶୟ ପ୍ରାପ୍ତ ହେବ ।

**ଏକବାରଂ ଦ୍ୱିବାରଂବା ତ୍ରିବାରଂବା ପଠେତ୍ତୁଯଃ**
**ସମାଧୌ ହରିଦାସସ୍ୟ ସର୍ବସିଦ୍ଧ ମବାପ୍ନୁୟାତ୍ ।୧୦୪।**

ଏକବାର, ଦୁଇବାର ବା ତିନିବାର ହରିଦାସ ଠାକୁରଙ୍କ ସମାଧି ସମ୍ମୁଖରେ ଯିଏ ପାଠ କରିବେ ସେ ସର୍ବସିଦ୍ଧି ପ୍ରାପ୍ତ ହେବେ ।

**ସର୍ବସିଦ୍ଧିଂ ପ୍ରଦାତାହି ହରିଦାସ ମହାପ୍ରଭୁଃ ।**
**କାମନା ପରିପୂରକୋ ହରିଦାସଂ ନମାମି ତମ୍ ।୧୦୫।**

ସର୍ବସିଦ୍ଧି ପ୍ରଦାୟକ ଶ୍ରୀ ହରିଦାସ, ମହାପ୍ରଭୁ ଯାହାର ସମସ୍ତ କାମନା ପୂର୍ଣ୍ଣ କରିଥିଲେ ସେହି ହରିଦାସ ଠାକୁରଙ୍କୁ ମୁଁ ନମସ୍କାର କରୁଅଛି ।

***ଇତି ଶ୍ରୀ ହରିଦାସ ଠାକୁର ମହିମା ଶତକଂ ସମ୍ପୂର୍ଣ୍ଣମ୍ ।***

(ପ୍ରଥମ ଆଷାଢ, ହେରାପଞ୍ଚମୀ ବଙ୍ଗାବ୍ଦ-୧୪୧୫
ବିକ୍ରମ ସମ୍ୱତ୍ ୨୦୬୫, ଆଷାଢ ଶୁକ୍ଳ ଷଷ୍ଠୀ ତିଥିରେ ରଚିତ)
(୫୩୧ ଚୈତନ୍ୟାବ୍ଦେ ବୈଶାଖ କୃଷ୍ଣ ଦ୍ୱାଦଶୀ ବୁଧବାସରେ ଉତ୍କଳଭାଷାନୁବାଦ ସମ୍ପୂର୍ଣ୍ଣ)





ସିଦ୍ଧବକୁଳ ନିକଟରେ ହରିଦାସ ଠାକୁର

# ଶ୍ରୀ ଶ୍ରୀ ଶ୍ୟାମସୁନ୍ଦର ଶତକମ୍

**ଗୋପୀପ୍ରେମ ପ୍ରଦାନେନ ଯେନ ନିସ୍ତାରିତଂ ଜଗତ୍ ।**
**ଗୌରଚନ୍ଦ୍ର ସ୍ୱୟଂଭୂତ୍ୱା ତଂ ବନ୍ଦେ ଶ୍ୟାମସୁନ୍ଦରମ୍ ।୧।**

ଶୃଙ୍ଗାର ସାର ସର୍ବସ୍ୱ ଶ୍ରୀ ଶ୍ୟାମସୁନ୍ଦର ସ୍ୱୟଂ ଶ୍ରୀ ଗୌରଚନ୍ଦ୍ର ହୋଇ ଗୋପୀପ୍ରେମ ପ୍ରଦାନ ପୂର୍ବକ ସକଳ ଜଗତ୍‌ବାସୀ ଜନଗଣଙ୍କୁ ନିସ୍ତାର କରିଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ବନ୍ଦନା କରୁଅଛି ।

**ଶ୍ରୀ ରାଧାଚରଣାବ୍ଜସ୍ଥ ଲାକ୍ଷାଃ-ଶୋଭିତ ବକ୍ଷସମ୍ ।**
**ନିକୁଞ୍ଜ ତଳ୍ପ ଶାୟିନଂ ନମାମି ଶ୍ୟାମସୁନ୍ଦରମ୍ ।୨।**

ନିଶାନ୍ତକାଳେ ଶ୍ରୀ ରାଧାରାଣୀଙ୍କର ଚରଣ ସଂଲଗ୍ନ ଲାକ୍ଷାରସ ଦ୍ୱାରା ଯାହାର ବକ୍ଷସ୍ଥଳ ସୁଶୋଭିତ ହୋଇଛି ଏବଂ ଯିଏ ନିକୁଞ୍ଜ ମଧ୍ୟରେ କୁସୁମ ଶଯ୍ୟାରେ ଶୟନ କରିଅଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ନମସ୍କାର କରୁଅଛି ।

**ରାଧିକାକୁଚକୁଙ୍କୁମ-ବିଲିପ୍ତଂ ଶ୍ୟାମଳଂ ତନୁମ୍ ।**
**ରାଧାରତି ସୁଖୋପେତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୩।**

ଯାହାର ଶ୍ୟାମଳ ସୁନ୍ଦର ଶରୀର ଶ୍ରୀ ରାଧିକାଙ୍କର କୁଚକୁଙ୍କୁମ ଦ୍ୱାରା ବିଲିପ୍ତ, ଯିଏ ଶ୍ରୀରାଧାଙ୍କର ସହିତ ରତି କ୍ରୀଡ଼ାରେ ସତିଶୟ ସୁଖୀ ହୁଅନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି ।

**ରାଧିକା ଚୁମ୍ବନ-ଦକ୍ଷଃ କୋଟି କାମବିମର୍ଦ୍ଦକଃ ।**
**ଗୋପୀ କୋଟିବିହାରୀ ଚ ଜୟତି ଶ୍ୟାମସୁନ୍ଦରଃ ।୪।**

ଯିଏ ଶ୍ରୀ ରାଧିକାଙ୍କର ବଦନକମଳ ଚୁମ୍ବନେ ପରମ ଦକ୍ଷ, ଯାହାର ସୌନ୍ଦର୍ଯ୍ୟ କୋଟି କୋଟି କାମଦେବଙ୍କର ଗର୍ବ ବିମର୍ଦ୍ଦନ କରେ, ଯିଏ

କୋଟି କୋଟି ଗୋପୀଗଣଙ୍କର ସହିତ ବିହାର କରନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦର ଜୟଯୁକ୍ତ ହୁଅନ୍ତୁ ।

**କିଲକିଞ୍ଚିତଭୂଷିତା ରାଧିକାସଙ୍ଗମାମୋଦମ୍ ।**
**ବୃନ୍ଦାବନୀୟ କୁଞ୍ଜସ୍ଥଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୫।**

ଯିଏ କିଲ କକିଞ୍ଚିତ ଭାବବିଭୂଷିତା ଶ୍ରୀମତୀ ରାଧିକାଙ୍କର ସଙ୍ଗମରେ ଆମୋଦିତ ହୁଅନ୍ତି, ସେହି ବୃନ୍ଦାବନୀୟ ନିକୁଞ୍ଜ ମନ୍ଦିରସ୍ଥିତ ଶ୍ରୀଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି । (କିଲକିଞ୍ଚିତ ଅର୍ଥାତ୍-ରତୀ ଆରମ୍ଭରେ ହର୍ଷହେତୁ ଗର୍ବ୍ବ, ଅଭିଳାଷ, ରୋଦନ, ସ୍ମିତ, ଅସୂୟା, ଭୟ ଓ କ୍ରୋଧର ଏକସଙ୍ଗେ ସଂମିଶ୍ରଣ) ।

**ବ୍ରଜାଙ୍ଗନା କୁଳଧ୍ୱଂସ ବଂଶୀଧ୍ୱନିପରାୟଣମ୍ ।**
**ବନ୍ଧୁରାଙ୍ଗସୁଶୋଭିତଂ ଭଜାମି ଶ୍ୟାମସୁନ୍ଦରମ୍ ।୬।**

ଯିଏ ବ୍ରଜାଙ୍ଗନାଗଣଙ୍କର କୁଳ ଧ୍ୱଂସକାରୀ ବଂଶୀଧ୍ୱନି ପରାୟଣ, ଯିଏ ଲଳିତ ତ୍ରିଭଙ୍ଗ ସୁଶୋଭିତ ଶ୍ରୀଅଙ୍ଗ, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ଭଜନ କରୁଅଛି ।

**ଗୋପାଙ୍ଗନା-ଦୁକୂଳହୃତ୍ ରାଧିକା ଚିତ୍ତଚୌରକଃ ।**
**ବ୍ରଜଲତା ପ୍ରତିଛନ୍ନଃ ଜୟତି ଶ୍ୟାମସୁନ୍ଦରଃ ।୭।**

ଯିଏ ଗୋପାଙ୍ଗନାବୃନ୍ଦଙ୍କର ଦୁକୂଳ, ବସ୍ତ୍ର ବା ପତି ଓ ପିତୃକୂଳ ହରଣ କାରି ଓ ରାଧିକାଙ୍କର ଚିତ୍ତଚୋର, ଯିଏ ସଦାସର୍ବଦା ବ୍ରଜ ବୃନ୍ଦାବନର ଲତାମଣ୍ଡପରେ ଲୁକ୍କାୟିତ ଅଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କର ଜୟ ହେଉ ।

**ରାଧିକା-ବଦନାମ୍ଭୋଜ ପୀୟୂଷ ପାନ ଲମ୍ପଟଃ ।**
**ରାଧିକା ହୃଦୟାମୋଦୀ ଜୟତି ଶ୍ୟାମସୁନ୍ଦରଃ ।୮।**

ଯିଏ ଶ୍ରୀରାଧିକାଙ୍କର ବଦନ ଶତଦଳର ମକରନ୍ଦ ପୀୟୂଷପାନରେ ସର୍ବଦା ଲମ୍ପଟ ଏବଂ ଶ୍ରୀମତୀ ରାଧିକାଙ୍କର ହୃଦୟରେ ଆମୋଦବର୍ଦ୍ଧନ କାରି ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କର ଜୟ ହେଉ ।

**ଯା ପୁରଷାୟିତା ରାଧା ଜଘନାନ୍ଦୋଲନେନ ତୁ ।**
**ସୁଖୟତି ସଦା ଯଂ ତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୯।**

ଯିଏ ପୁରୁଷାୟିତା ପୁରୁଷ ସମାନ ବିପରୀତ ରମଣକାରିଣୀ ଶ୍ରୀମତୀ ରାଧାରାଣୀ ଯାହାଙ୍କୁ ଜଘନ ଆନ୍ଦୋଳନ ଦ୍ୱାର ସଦା ରମଣକାଳରେ ସୁଖ ପ୍ରଦାନ କରନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି ।

**ରାଧାବଦନ ସୌନ୍ଦର୍ଯ୍ୟ ମଦୋନ୍ମାଦିତମାନସମ୍ ।**
**ପୁଲକାଙ୍ଗ ସଖୀମଧ୍ୟେ ସ୍ମରାମିଶ୍ୟାମସୁନ୍ଦରମ୍ ।୧୦।**

ଯିଏ ଲଳିତାଦି ସଖିଗଣ ମଧ୍ୟରେ ଶ୍ରୀରାଧିକାଙ୍କର ବଦନ ସୌନ୍ଦର୍ଯ୍ୟମଦ ଦ୍ୱାରା ଉନ୍ମାଦିତ ମାନସ ହୋଇ ପୁଲକିତାଙ୍ଗ ହୋଇଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି ।

**ମଦନୋନ୍ମାଦିତା ରାଧା ଦୃଷ୍ଟ୍ୱାଽଯସ୍ୟ ସୁବିଗ୍ରହମ୍ ।**
**ନବୀନ ନୀରଦଂ ଶ୍ୟାମଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୧୧।**

ଯାହାର ନବଜଳଧର ସଦୃଶ ଶ୍ୟାମବର୍ଣ୍ଣସୁନ୍ଦର ଶ୍ରୀ ବିଗ୍ରହ ଦେଖି ଶ୍ରୀରାଧା ମଦନରେ ଉନ୍ମାଦିତ ହୁଅନ୍ତି ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି ।

**ଗୋବର୍ଦ୍ଧନ ଗିରୀନ୍ଦ୍ରସ୍ୟ ଦରୀକାନନ ବାସିନମ୍ ।**
**କଳଭେନ୍ଦ୍ରଂ ମଦୋନ୍ମତ୍ତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୧୨।**

ଯିଏ ଗିରୀରାଜ ଗୋବର୍ଦ୍ଧନଙ୍କର ଦରୀଗୁହା ଓ କାନନ ନିବାସୀ ମଦମତ୍ତ ଗଜରାଜ ସଦୃଶ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଛି ।

**ଦଧିବିକ୍ରୟିଣଂ ସଦା ବ୍ରଜଯୌବତ ମଣ୍ଡଳମ୍ ।**
**ଗମନାବରିତଂ ମାର୍ଗେ ସ୍ମରାମି ଶ୍ୟାମସୁନ୍ଦରମ୍ ।୧୩।**

ଦଧିବିକ୍ରୟିଣୀ ବ୍ରଜଯୁବତୀ ମଣ୍ଡଳୀକୁ ଯିଏ ସର୍ବଦା ପଥରେ ଗମନ ଆବରଣ ବା ନିବାରଣ କରନ୍ତି, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଛି ।

**ଯସ୍ୟ ବେଣୁ ନିନାଦେନ ବିଷ୍ଣୁ ବକ୍ଷବିଳାସିନୀ ।**

**ମଦନୋନ୍ମଥିତାଭୂତ୍ତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୧୪।**

ଯାହାର ତ୍ରିଲୋକାକର୍ଷୀ ବେଣୁନିନାଦଦ୍ୱାରା ବିଷ୍ଣୁବକ୍ଷବିଳାସିନୀ ଶ୍ରୀ ଲକ୍ଷ୍ମୀଦେବୀ ମଦନବାଣରେ ଉନ୍ମଥିତା ହୋଇଥିଲେ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି ।

**ମୁରଲୀ କଳନାଦେନ ବ୍ରହ୍ମାଦୀନ୍ ବିମୁମୋହ ଯଃ ।**

**ସ୍ଥାବରାନ୍ ଜଙ୍ଗମାଂଶ୍ଚ ତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୧୫।**

ଯିଏ ମୁରଲୀର କଳନିନାଦ ଦ୍ୱାରା ବ୍ରହ୍ମା ପ୍ରଭୃତି ବିଦ୍ୱତ୍ତମଗଣଙ୍କୁ ଏବଂ ସ୍ଥାବର ଓ ଜଙ୍ଗମାଦିଙ୍କୁ ବିମୋହିତ କରିଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଛି ।

**ସ୍ୱମାଧୁର୍ଯ୍ୟଂ ମଣିସ୍ତମ୍ଭେ ବିଲୋକ୍ୟ ମୁଦିତାନନମ୍ ।**

**ଆଲିଙ୍ଗିତୁଂ ସମୁଦ୍ୟନ୍ତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୧୬।**

ଯିଏ ସ୍ୱଗୃହସ୍ଥିତ ମଣିସ୍ତମ୍ଭରେ ନିଜ ଅଙ୍ଗମାଧୂର୍ଯ୍ୟ ବିଲୋକନ କରି ଆନନ୍ଦିତ ବଦନରେ ତାହାକୁ ଆଲିଙ୍ଗନ କରିବାପାଇଁ ସମୁଦ୍ୟତ ହୁଅନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି ।

**କରାବ୍ଜେ ମୁରଲୀ ଯସ୍ୟ କଟ୍ୟୈ ଚ କ୍ଷୁଦ୍ର ଘୁଣ୍ଟିକା ।**

**ନୂପୁରୌ ଚରଣାବ୍ଜୟୋଃ ସ୍ମରାମି ଶ୍ୟାମସୁନ୍ଦରମ୍ ।୧୭।**

ଯାହାର କରକମଳେ ମୁରଲୀ ସୁଶୋଭିତ, କ୍ଷୀଣ କଟିତଟେ କ୍ଷୁଦ୍ର ଘଣ୍ଟିକା ବିରାଜିତ, ଚରଣ, କମଳଯୁଗଳରେ ଶବ୍ଦାୟମାନ ନୂପୁର ଶୋଭାୟମାନ ହେଉଛି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଛି ।

**ଶୃଙ୍ଗ କଟିତଟେ ଯସ୍ୟ କକ୍ଷଂଶୋଭିତ ବେତ୍ରକମ୍ ।**

**ନିର୍ଯୋଗ ଶୋଭିତଂ ସ୍କନ୍ଧଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୧୮।**

ଯାହାର ସୁନ୍ଦର କଟିଦେଶରେ ଶୃଙ୍ଗ, କକ୍ଷ ଦେଶରେ ବେତ୍ର ଶୋଭାପାଉଛି ଏବଂ ସ୍କନ୍ଧ ପ୍ରଦେଶ ନିର୍ଯୋଗ (ଗାଭୀବନ୍ଧନ ରଜ୍ଜୁ) ଦ୍ୱାରା ସୁଶୋଭିତ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଛି ।

**ନୀପକୁସୁମମାଳୟା ଶୋଭିତଂ ପୀନବକ୍ଷସମ୍ ।**
**ଗନ୍ଧୋନ୍ମାଦିତ ଗୋପିକଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୧୯।**

ଯାହାର ପୀନ ବକ୍ଷସ୍ଥଳ ପ୍ରସ୍ଫୁଟିତ କଦମ୍ବକୁସୁମର ମାଳା ଦ୍ୱାରା ଶୋଭିତ, ଯିଏ ନିଜ ଅଙ୍ଗ ଗନ୍ଧଦ୍ୱାରା ଗୋପିକାଗଣଙ୍କୁ ଉନ୍ମାଦିତ କରିଛନ୍ତି ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଛି ।

**ମୟୂରପିଚ୍ଛଶୋଭିତଂ ନବଗୁଞ୍ଜାବିଭୂଷିତମ୍ ।**
**ବାମାନ୍ଦୋଳିତ ଚୂଡ଼କଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୨୦।**

ଯାହାର ମସ୍ତକସ୍ଥିତ ଚୂଡ଼ାମଣ୍ଡମୟୂର ପୁଚ୍ଛଦ୍ୱାରା ସୁଶୋଭିତ ଏବଂ ନବ ଗୁଞ୍ଜାମାଳା ବିଭୂଷିତ ଓ ବାମଦିଗକୁ ଆଲୋକିତ ବା ନତ ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଛି ।

**ଅଳକାଳି କୁଳୈର୍ଯୁଷ୍ଟଂ ଗୋପିକାନୟନୋତ୍ସବମ୍**
**ପ୍ରଫୁଲ୍ଲଂ ବଦନାମ୍ଭୋଜଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୨୧।**

ଯାହାର ପ୍ରଫୁଲ୍ଲ ବଦନ କମଳ ଭ୍ରମର ସଦୃଶ ଅଳକା ସମୂହଦ୍ୱାରା ସୁଶୋଭିତ ଏବଂ ବ୍ରଜଗୋପିକାଗଣଙ୍କର ନୟନୋତ୍ସବ ବର୍ଦ୍ଧନକାରୀ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଛି ।

**କଟାକ୍ଷ-ସାୟକେନ ଯୋ ରାଧାମୃଗୀ ବଶୀକୃତମ୍ ।**
**ବ୍ୟଥିତଂ ଗୋପିକାବୃନ୍ଦଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୨୨।**

ଯିଏ ଲୋଚନ କଟାକ୍ଷରୂପ ସାୟକଦ୍ୱାରା ବ୍ରଜର ଅତିଶୟ ଚଞ୍ଚଳା ଶ୍ରୀ ରାଧାମୃଗୀଙ୍କୁ ବଶୀଭୂତ କରିଛନ୍ତି ଏବଂ କଟାକ୍ଷବାଣଦ୍ୱାରା ବ୍ରଜଗୋପିକାବୃନ୍ଦଙ୍କୁ ବ୍ୟଥିତ କରିଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି ।

**ମଦନୋନ୍ମାଦିତା ରାଧାଧର ଚୁମ୍ବନ ଚଞ୍ଚଳମ୍ ।**
**ଅଞ୍ଚଳା କର୍ଷଣଂ କୃତ୍ୱା ସ୍ମରାମି ଶ୍ୟାମସୁନ୍ଦରମ୍ ।୨୩।**

ଯିଏ ନିକୁଞ୍ଜମଧ୍ୟରେ ମଦନ ମଦରେ ଉନ୍ମାଦିତ ଶ୍ରୀମତୀ ରାଧାଙ୍କର ବସନାଞ୍ଚଳ ଆକର୍ଷଣ କରି ଅଧର ଚୁମ୍ବନ କରିବାପାଇଁ ଚଞ୍ଚଳ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ବିଶାଳ ବକ୍ଷସଂ ଯସ୍ୟ ନୀଳେନ୍ଦ୍ରମଣି ସନ୍ନିଭମ୍ ।**
**ରାଧିକା କେଳି କାନ୍ତାରଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୨୪।**

ଯାହାର ବିଶାଳ ବକ୍ଷସ୍ଥଳ ଇନ୍ଦ୍ରନୀଳମଣି ସମାନ ଏବଂ ଶ୍ରୀମତୀ ରାଧିକାଙ୍କର କେଳୀ କାନନ ସଦୃଶ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି ।

**ପୀନାହିଭୋଗ ସଦୃଶଂ ଦୀର୍ଘଂ ଯସ୍ୟ ଭୂଜଦ୍ୱୟମ୍ ।**
**ରାଧାବରୋଧନେ ଦକ୍ଷଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୨୫।**

ଯାହାର ସ୍ଥୁଳସୁଦୀର୍ଘ ଭୂଜଯୁଗଳ ସର୍ପଦେହ ସଦୃଶ, ଯେଉଁ ଭୁଜଦ୍ୱୟ ଶ୍ରୀରାଧାରାଣୀଙ୍କର ପଥ ଅପରୋଧନରେ ଅତିଶୟ ଦକ୍ଷ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି ।

**ନିକୁଞ୍ଜ ବେଦିକା ମଧ୍ୟେ ରାଧୟାଲଙ୍କୃତଃ ସଦା ।**
**ଲଳିତାଳିଗଣୈର୍ଯୁକ୍ତୋ ଜୟତି ଶ୍ୟାମସୁନ୍ଦରଃ ।୨୬।**

ଯିଏ ଶ୍ରୀ ଲଳିତାଦି ସଖିଗଣଙ୍କ ଦ୍ୱାରା ସେବିତ ହୋଇ ନିକୁଞ୍ଜ ବେଦି ମଧ୍ୟରେ ସର୍ବଦା ଶ୍ରୀମତୀ ରାଧାରାଣୀଙ୍କ ସହିତ ଅଳଙ୍କୃତ ଅଛନ୍ତି । ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କର ଜୟ ହେଉ ।

**ତ୍ରିଭଙ୍ଗ ଲଳିତଂ ଯସ୍ୟ ଦିବ୍ୟ ଚରଣ ଛନ୍ଦିତମ୍ ।**
**ନନ୍ଦିତଂ ବ୍ରଜଯୌବତଂ ଭଜାମି ଶ୍ୟାମସୁନ୍ଦରମ୍ ।୨୭।**

ଯିଏ ନିକୁଞ୍ଜ ମଧରେ ଲଳିତ ତ୍ରିଭଙ୍ଗ ଭାବରେ ବିରାଜମାନ ଅଛନ୍ତି, ଯାହାର ଶ୍ରୀଚରଣ ଯୁଗଳ ଦିବ୍ୟରୂପେ ଛନ୍ଦିତ, ସୁକୌଶଳରେ ସ୍ଥାପିତ, ଯାହାଦ୍ୱାରା ବ୍ରଜଯୁବତୀମଣ୍ଡଳୀ ଆନନ୍ଦିତ ହୁଅନ୍ତି, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ଭଜନ କରୁଅଛି ।

**ମୃଗମଦ ମଦଧ୍ୱଂସୀ ଯସ୍ୟ ଦିବ୍ୟାଙ୍ଗ-ସୌରଭମ୍ ।**
**ଗୋପୀଘ୍ରାଣେନ୍ଦ୍ରିୟୋନ୍ମାଦଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୨୮।**

ଯାହାର ଦିବ୍ୟ ଶ୍ରୀଅଙ୍ଗ ସୌରଭ ମୃଗମଦର ମଦକୁ ମଧ ବିଧ୍ୱଂସ କରିଦିଏ, ଯାହା ଗୋପୀଗଣଙ୍କର ଘ୍ରାଣେନ୍ଦ୍ରିୟରେ ପ୍ରବେଶ କରି ଉନ୍ମତ୍ତ କରିଦିଏ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି ।

**ସ୍ମର କେଳିରତା ରଧାବଦନାବ୍ଜ ମଧୁବ୍ରତମ୍ ।**
**ନିକୁଞ୍ଜ ତଳ୍ପ ମଧ୍ୟସ୍ଥଂ ସ୍ମରାମି ଶ୍ୟାମ ସୁନ୍ଦରମ୍ ।୨୯।**

ଯିଏ ନିକୁଞ୍ଜ ତଳ୍ପ ମଧସ୍ଥିତା ସ୍ମରକେଳୀ (ରତିକ୍ରୀଡ଼ା) ପରାୟଣା ଶ୍ରୀମତୀରାଧିକାଙ୍କର ବଦନ ପଙ୍କଜର ମତ୍ତ ମଧୁକର (ଭ୍ରମର), ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି ।

**ଶତକୋଟି ବ୍ରଜାଙ୍ଗନାଧର ଚୁମ୍ବନ ଲମ୍ପଟମ୍ ।**
**ରାସମଣ୍ଡଳ ମଧ୍ୟସ୍ଥଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୩୦।**

ଯିଏ ଶ୍ରୀରାସମଣ୍ଡଳ ମଧରେ ଅବସ୍ଥାନ କରି ଶତକୋଟି ବ୍ରଜାଙ୍ଗନାଗଣଙ୍କର ଅଧର ଚୁମ୍ବନରେ ଲମ୍ପଟ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଅଛି ।

**ରାଧାମାନ ପ୍ରଶାନ୍ତାୟ ତ୍ୟକ୍ତ୍ୱା ଗୋପୀ କଦମ୍ବକମ୍ ।**
**ରାଜତି ରାଧୟା କୁଞ୍ଜେ ଜୟତି ଶ୍ୟାମସୁନ୍ଦରଃ ।୩୧।**

ଯିଏ ମାନିନୀ ଶ୍ରୀମତୀ ରାଧାଙ୍କର ମାନ ଶାନ୍ତ କରିବା ନିମିତ୍ତ ବ୍ରଜଗୋପୀ ସମୂହଙ୍କୁ ପରିତ୍ୟାଗ କରି କୁଞ୍ଜ ମଧ୍ୟରେ ଶ୍ରୀମତୀ ରାଧିକାଙ୍କର ସହିତ ସୁଶୋଭିତ ହୋଇଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦର ଜୟଯୁକ୍ତ ହୁଅନ୍ତୁ ।

**କୁଞ୍ଜେ ସ୍ୱାଧିନଭର୍ତୃକା ରାଧାଲିଙ୍ଗିତ-ବିଗ୍ରହମ୍ ।**
**ପ୍ରତ୍ୟାଲିଙ୍ଗିତ ରାଧିକଂ ସ୍ମରାମି ଶ୍ୟାମ ସୁନ୍ଦରମ୍ ।୩୨।**

ଯିଏ ନିକୁଞ୍ଜ ଭିତରେ ସ୍ୱାଧିନଭର୍ତୃକା ଶ୍ରୀ ରାଧାରାଣୀଙ୍କୁ ଆଲିଙ୍ଗନ କରିଅଛନ୍ତି ଏବଂ ଶ୍ରୀରାଧାରାଣୀଙ୍କ ଦ୍ୱାରା ଆଲିଙ୍ଗିତ ହୋଇଛନ୍ତି, ସେହି ଶ୍ରୀ ଶ୍ୟାମାସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**କଳହାନ୍ତରିତା ରାଧାଚରଣାବ୍ଜ ବିଲୋଠିତମ୍ ।**
**ଧୂଳିଧୂସର ସର୍ବାଙ୍ଗ ସ୍ମରାମି ଶ୍ୟାମସୁନ୍ଦରମ୍ ।୩୩।**

ଯିଏ କଳହାନ୍ତରିତା ମାନବତୀ ଶ୍ରୀମତୀ ରାଧିକାଙ୍କର ମାନ ଅପନୋଦନ ପାଇଁ ତାଙ୍କର ଶ୍ରୀଚରଣ ସରୋରହ ତଳେ ବିଲୁଣ୍ଠିତ ହେବାଫଳରେ, ଶ୍ରୀରାଧାଙ୍କର ଚରଣଧୂଳି ଦ୍ୱାରା ସର୍ବାଙ୍ଗ ଧୂସରବର୍ଣ୍ଣ ହୋଇଛନ୍ତି । ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ବ୍ରଜ-ଜଳାଧି କୌସ୍ତୁଭଂ ରାଧାବକ୍ଷ-ବିଭୂଷଣମ୍ ।**
**ବ୍ରଜସ୍ତ୍ରୀଜନ ଲମ୍ପଟଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୩୪।**

ଯିଏ ବ୍ରଜବୃନ୍ଦାବନ ରୂପ ମହାଜଳଧିର ଶ୍ରେଷ୍ଠ କୌସ୍ତୁଭରତ୍ନ ସଦୃଶ ଓ ଶ୍ରୀମତୀ ରାଧାରାଣୀଙ୍କର ବକ୍ଷ ବିଭୂଷଣ ମଣି ବିଶେଷ ତଥା ବ୍ରଜସ୍ତ୍ରୀ ଗୋପୀଜନଗଣଙ୍କର ପ୍ରତି ପରିହାସାଦିରେ ରସିକଶେଖର, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ରାଧା କଞ୍ଚୁକ ମୋଚନେ ସର୍ବଦା ବ୍ୟଗ୍ରହସ୍ତକମ୍ ।**
**ଫୁଲ୍ଲସ୍ମେର ଗଣ୍ଡଯୁତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୩୫।**

ଯିଏ ଶ୍ରୀରାଧିକାଙ୍କର ବକ୍ଷସ୍ଥ କଞ୍ଚୁକ ମୋଚନ କରିବା ପାଇଁ ସର୍ବଦା ବ୍ୟଗ୍ରହସ୍ତ, ସୁତରାଂ ଗଣ୍ଡଯୁଗଳ ପ୍ରଫୁଲ୍ଲ ଓ ସ୍ମିତ ସୁଶୋଭିତ ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ରାଧିକା କୁଚଶୋଭନମରଣାଙ୍ଗୁଳିପଲ୍ଲବମ୍ ।**
**ସର୍ବଦା ଶୋଭତେ ଯସ୍ୟ ସ୍ମରାମି ଶ୍ୟାମସୁନ୍ଦରମ୍ ।୩୬।**

ଯାହାର ଅରଣବର୍ଣ୍ଣ ଅଙ୍ଗୁଳିପଲ୍ଲବଗୁଡ଼ିକ ଶ୍ରୀରାଧିକାଙ୍କର କୁଚକଳଶର ଶୋଭାବର୍ଦ୍ଧନ ପୂର୍ବକ ସର୍ବଦା ଶୋଭାୟମାନ ହେଉଛି । ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ରାଧିକାକର୍ଷଣେ ଦକ୍ଷଂ ମୁରଲୀ କଳଶୋଭିତମ୍ ।**
**ତ୍ରିଭଙ୍ଗ ଲଳିତଂ ରମ୍ୟଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୩୭।**

ଯିଏ ଶ୍ରୀମତୀ ରାଧାରାଣୀଙ୍କୁ ଗୃହରୁ ଆକର୍ଷଣ କରିବାପାଇଁ ଅତିଶୟ ଦକ୍ଷ ମନୋରମ ମୁରଲୀର କଳନାଦରେ ସୁଶୋଭିତ ଏବଂ ତ୍ରିଭଙ୍ଗଲଳିତ ରମଣୀୟ ମୂର୍ତ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଗୋକୁଳକାମିନୀକାମ-ବିବର୍ଦ୍ଧନ ଶିଖାମଣିମ୍ ।**
**ମଦନମାନମର୍ଦ୍ଦିତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୩୮।**

ଯିଏ ମଦନଙ୍କର ମାନ ମର୍ଦ୍ଦିତ କରିଛନ୍ତି ଏବଂ ଗୋକୁଳବାସିନୀ ଗୋପ କାମିନୀଗଣଙ୍କର କାମାଗ୍ନି ବିବର୍ଦ୍ଧନ ପାଇଁ ଶିଖାମଣିସ୍ୱରୂପ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ମୁରଲୀ ରସନଂ ଯସ୍ୟ ରାଧାନୀବି-ବିମୋଚନମ୍ ।**
**ରୋଚନଂ ଯୁବତୀନାଂ ତଂ ସ୍ମରାମି ଶ୍ୟାମ ସୁନ୍ଦରମ୍ ।୩୯।**

ଯାହାର ମୁରଲୀନିନାଦ ଶ୍ରୀମତୀ ରାଧିକାଙ୍କର ନୀବିବନ୍ଧନମୋଚନ କରେ ଏବଂ ବ୍ରଜଯୁବତୀଗଣଙ୍କର ସାତିଶୟ ରୁଚିକର ହୁଏ । ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ମହେନ୍ଦ୍ରମଣିସୌନ୍ଦର୍ଯ୍ୟଂ ବିଡ଼ମ୍ବିଶୋଭନାଙ୍ଗକମ୍ ।**
**ଲୋଭନଂ ବ୍ରଜନାରୀଣାଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୪୦।**

ଯାହାର ଅଙ୍ଗଶୋଭା ଇନ୍ଦ୍ରନୀଳମଣିର ସୌନ୍ଦର୍ଯ୍ୟକୁ ମଧ ବିଡ଼ମ୍ୱିତ କରେ, ଯାହା ବ୍ରଜ ନାରୀଗଣଙ୍କର ପରମ ଶୋଭନୀୟ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ବିନ୍ୟସ୍ତନଖରାଗ୍ରେ ଶ୍ରୀଗୋବର୍ଦ୍ଧନ ମହାଗିରିମ୍ ।**
**ଗୋପମଣ୍ଡଳ ଶୋଭିତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୪୧।**

ଯାହାର ବାମହସ୍ତସ୍ଥ କନିଷ୍ଠାଙ୍ଗୁଳିର ନଖ ଅଗ୍ରଭାଗରେ ଶ୍ରୀଗୋବର୍ଦ୍ଧନ ମହାପର୍ବତ ବିନ୍ୟସ୍ତ ଅଛନ୍ତି ଏବଂ ଯିଏ ଗୋପମଣ୍ଡଳ ଦ୍ୱାରା ସୁଶୋଭିତ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ରାଧାଭୁଜାନ୍ତମାଲୋକ୍ୟ କମ୍ପିତଂ କରପଙ୍କଜମ୍ ।**
**ବଦନଂ ନମିତଂ ରମ୍ୟଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୪୨।**

ଶ୍ରୀଗୋବର୍ଦ୍ଧନ ଧାରଣ କାଳରେ ଶ୍ରୀମତୀ ରାଧାରାଣୀଙ୍କର ବାହୁର ମୂଳ ପ୍ରଦେଶ ଅବଲୋକନେ ଯାହାର କର କମଳ କମ୍ପିତ ହେଲେ ଲଜ୍ଜାବଶତଃ ରମଣୀୟ ବଦନ କମଳ ବିନମ୍ର ହୋଇଯାଇଥିଲା । ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଛି ।

**ଦିବ୍ୟ ବୃନ୍ଦାବନେ ରମ୍ୟେ କଳିନ୍ଦ ତନୟା ତୀରେ ।**
**ମୁରଲୀ କୂଜିତଂ କଳଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୪୩।**

ପରମ ରମଣୀୟ ଦିବ୍ୟ ବୃନ୍ଦାବନରେ କଳିନ୍ଦ ତନୟା ଶ୍ରୀ ଯମୁନାତୀରରେ ଯାହାର ମୁରଲୀ କଳତାନରେ କୂଜନ କରୁଥିଲା, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଯସ୍ୟ ବେଣୁରବଂ ଶ୍ରୁତ୍ୱା ରାଧାଦିଗୋକୁଳାଙ୍ଗନାଃ ।**
**ସର୍ବଂ ହିତ୍ୱା ସମାଜଗ୍ମୁଃ ସ୍ମରାମି ଶ୍ୟାମସୁନ୍ଦରମ୍ ।୪୪।**

ଯାହାର ବେଣୁର କଳଗାନ ଶ୍ରବଣ କରି ବାମଲୋଚନା ଶ୍ରୀରାଧାଦି ଗୋକୁଳାଙ୍ଗନା ସମସ୍ତ ପରିତ୍ୟାଗ କରି ନିକଟକୁ ସମାଗତ ହୋଇଥିଲେ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ରାଧାଦିବ୍ରଜବାଲାନାଂ ବଲୟଶୋଭିତଂ କରମ୍ ।**

**କରେ ଧୃତ୍ୱା ରରାମ ତଂ ସ୍ମରମି ଶ୍ୟାମସୁନ୍ଦରମ୍ ।୪୫।**

ଯିଏ ଶ୍ରୀରାସଲୀଳା ବିଶେଷେ ଶ୍ରୀମତୀରାଧାପ୍ରଭୃତି ବ୍ରଜବାଳାଗଣଙ୍କର ସୁବର୍ଣ୍ଣ ବଳୟ ସୁଶୋଭିତ କର ନିଜ କରେ ଧାରଣ କରି ରମଣ କରିଥିଲେ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ସର୍ବଗୋପୀଗଣୈଃ ସାର୍ଦ୍ଧଂ ତପନତନୟାନୀରେ ।**

**କ୍ରୀଡ଼ିତଂ ଜଳ କ୍ରୀଡ଼ୟା ସ୍ମରାମି ଶ୍ୟାମସୁନ୍ଦରମ୍ ।୪୬।**

ଯିଏ ତପନତନୟା ଶ୍ରୀମତୀ ଯମୁନାଙ୍କର ନୀଳ ସୁଶୀତଳ ନୀରରେ ସକଳ ଗୋପୀଗଣଙ୍କର ସହିତ ଜଳକ୍ରୀଡ଼ାର ଦ୍ୱାରା କ୍ରୀଡ଼ା କରିଥିଲେ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଦିନମଣି ସୁତାତୀରେ ଦିବ୍ୟ ନିକୁଞ୍ଜମନ୍ଦିରେ ।**

**ରରାଜ ରାଧୟା ସାର୍ଦ୍ଧଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୪୭।**

ଯିଏ ଦିନମଣି ସୂର୍ଯ୍ୟ, ତାଙ୍କର ସୁତା ଶ୍ରୀଯମୁନାତୀରସ୍ଥ ଦିବ୍ୟ ନିକୁଞ୍ଜ ମନ୍ଦିର ମଧ୍ୟରେ ଶ୍ରୀମତୀ ରାଧିକାଙ୍କର ସହିତ ବିରାଜମାନ କରିଛନ୍ତି, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ନିଦ୍ରାକୁଳିତଲୋଚନାଂ ରାଧିକାବଦନସୌରଭମ୍ ।**

**ଘ୍ରାତ୍ୱା ହୃଷ୍ୟତ୍ କଳେବରଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୪୮।**

ନିଦ୍ରାଦ୍ୱାରା ବ୍ୟାକୁଳିତ ଲୋଚନା ଶ୍ରୀମତୀ ରାଧିକାଙ୍କର ବଦନସୌରଭ ଘ୍ରାଣ ଗ୍ରହଣ କରିବାଦ୍ୱାରା ଯାହାର ଶ୍ୟାମକଳେବର ଅତିଶୟ ହର୍ଷଯୁକ୍ତ ହୋଇଥିଲା । ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ନିଦ୍ରା ମୁଦ୍ରିତ ଲୋଚନାଂ ରାଧିକାବଦନାମ୍ଭୋଜମ୍ ।**

**ଚୁଚୁମ୍ବ ମୁହୂରେବ ତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୪୯।**

ନିଦ୍ରାବେଶରେ ମୁଦ୍ରିତ ଲୋଚନା ଶ୍ରୀମତୀ ରାଧିକାଙ୍କର ବଦନକମଳକୁ ଯିଏ ବାରମ୍ବାର ଚୁମ୍ବନ କରୁଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ନିଦ୍ରୟାକୁଳିତାରାଧା ଯସ୍ୟ ହୃଦୟତଳ୍ପିତମ୍ ।**
**ଚଞ୍ଚଳାଶୋଭିତଂ ଘନଂ ସ୍ମରାମିଶ୍ୟାମସୁନ୍ଦରମ୍ ।୫୦ ।**

ନିଦ୍ରାରେ ଆକୁଳିତ ନୟନା ଶ୍ରୀମତୀ ରାଧିକା ଯାହାର ହୃଦୟକୁ ତଳ୍ପତୁଲ୍ୟ ଅର୍ଥାତ୍ ହୃଦୟ ମଧ୍ୟରେ ଶୟନ କରିଛନ୍ତି, ତଦ୍ୱାରା ଯେଉଁଭଳି ସୌଦାମିନୀ ଶୋଭିତ ମେଘର ସୌନ୍ଦର୍ଯ୍ୟ ସେହିପରି ଶୋଭା ହୋଇଛି, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ନିକୁଞ୍ଜ ତଳ୍ପ ଶାୟିନଂ ମଦନାବ୍ଧି ସୁଧାକରମ୍ ।**
**ରାଧିକା କୁମୁଦାହ୍ଲାଦଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୫୧ ।**

ଯିଏ ନିକୁଞ୍ଜ ତଳ୍ପରେ ଶୟନକାରୀ ମଦନମହାସାଗରର ସୁଧାକର ଏବଂ ଶ୍ରୀରାଧିକା କୁମୁଦିନୀର ଆହ୍ଲାଦଦାୟୀ, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ରାଧା କଞ୍ଚୁଲିକା ଚାରୁ ନୀବିବନ୍ଧ ବିମୋଚକମ୍ ।**
**ତିଳତଣ୍ଡୁଳକଂ ତଳ୍ପେ ସ୍ମରାମି ଶ୍ୟାମସୁନ୍ଦରମ୍ ।୫୨ ।**

ଯିଏ ଶ୍ରୀମତୀ କିଶୋରୀମଣି ରାଧାଙ୍କର ସୁନ୍ଦର କଞ୍ଚୁଲିକା ଓ ଚାରୁ ନୀବିବନ୍ଧନମୋଚନକାରୀ ଏବଂ କୁସୁମତଳ୍ପରେ ତିଳତଣ୍ଡୁଳକ ଅର୍ଥାତ୍ ଆଲିଙ୍ଗନ ବିଶେଷେ ଆବଦ୍ଧ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ସୀତ୍କୃତବଦନା ରାଧା ହ୍ୟାଲିଙ୍ଗନସମୁତ୍ସୁକମ୍ ।**
**ସମ୍ପ୍ରୟୋଗ ରଣେ ଦକ୍ଷଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୫୩।**

ଯିଏ ରତିରଣେ ସୀତ୍‌କାର ଦ୍ୱାରା ବଦନପୂର୍ଣ୍ଣ କରନ୍ତି ସେହି ଶ୍ରୀମତୀଙ୍କୁ ଆଲିଙ୍ଗନ କରିବାପାଇଁ ଅତିଶୟ ସମୁତ୍ସୁକ ଏବଂ ଯିଏ ସମ୍ପ୍ରୟୋଗ ସମରରେ ଅତିଶୟ ସୁଦକ୍ଷ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ସ୍ୱେଦବିନ୍ଦୁ ସମାୟୁକ୍ତଂ ରାଧିକାବଦନାମ୍ଭୋଜମ୍ ।**
**ଵିଲୋକ୍ୟ ମୁମୁଦେ ଭୃଶଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୫୪।**

ଯିଏ ରତିଶ୍ରମରେ ଘର୍ମବିନ୍ଦୁ ଶୋଭିତ ଶ୍ରୀରାଧିକାଙ୍କର ବଦନ ପଙ୍କଜ ବିଲୋକନ କରି ଅତିଶୟ ଆନନ୍ଦ ଲାଭ କରନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ସୁବର୍ଣ୍ଣଲତିକା ବଦ୍ଧଂ ନବୀନ ନୀପପାଦପମ୍ ।**
**ଶୋଭିତଂ ରାଧୟା ସାର୍ଦ୍ଧଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୫୫।**

ଯିଏ ନବସ୍ୱର୍ଣ୍ଣଲତା ପରିବେଷ୍ଟିତ ନବୀନ ତମାଳ ସଦୃଶ ଆଲିଙ୍ଗିତା ଶ୍ରୀମତୀ ରାଧିକାଙ୍କ ସହିତ ଶୋଭା ପାଉଛନ୍ତି । ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ରାଧିକା ଚରଣଦ୍ୱନ୍ଦଂ ଧୃତ୍ୱାତୁ ହୃଦୟୋପରି ।**
**ରମିତଂ ରତିସୁନ୍ଦରଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୫୬।**

ଯିଏ ସୁରତୋନ୍ମତ୍ତା ଶ୍ରୀ ରାଧିକାଙ୍କର ଚରଣଦ୍ୱୟ ହୃଦୟର ଉପରେ ଧାରଣ କରି ରତିସୁନ୍ଦର ନାମକ ଆସନରେ ରମଣ କରନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ନ୍ୟଗ୍ରୋଧପରି ମଣ୍ଡଳା ରାଧିକାରମଣୋତ୍ସୁକମ୍ ।**
**ଦିବ୍ୟ କାମକଳାଚାରୁଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୫୭।**

ଯିନି ନ୍ୟଗ୍ରୋଧ ପରିମଣ୍ଡଳା କଳାବତୀ ଶ୍ରୀମତୀ ରାଧିକାଙ୍କର ସହିତ ରମଣରେ ଅତୀବ ସମୁତ୍ସୁକ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ମଦନୋନ୍ମାଦିତା ରାଧାଂ ରମ୍ୟପଦ୍ମାସନୋପରି-**
**ସମାଲିଙ୍ଗ୍ୟ ରରାମ ତଂ ସ୍ମରାମିଶ୍ୟାମସୁନ୍ଦରମ୍ ।୫୮।**

ଯିଏ ମଦନରଣେ ଉନ୍ମାଦିନୀ ଶ୍ରୀମତୀ ରାଧିକାଙ୍କୁ ଆଲିଙ୍ଗନ କରି ପରମ ରମଣୀୟ ପଦ୍ମାସନର ଉପରେ ସ୍ଥାପନ କରି ରମଣ କରୁଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ରତ୍ୟନ୍ତେ ସ୍ୱେଦ ପୂର୍ଣ୍ଣାଙ୍ଗମର୍ଦ୍ଧୋନ୍ମିଳିତ ଲୋଚନମ୍ ।**
**ସମାଲିଙ୍ଗିତ ରାଧିକଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୫୯।**

ଯିଏ ରମଣାନ୍ତେ ରତିସ୍ୱେଦରେ ପରିପୂର୍ଣ୍ଣ କଳେବର ଅର୍ଦ୍ଧନିମିଳିତ ଲୋଚନଦ୍ୱୟ ତଥାଭୂତ ଶ୍ରୀମତୀ ରାଧିକାଙ୍କୁ ଆଲିଙ୍ଗନ କରିଛନ୍ତି । ସେହି ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ରାଧା କପୋଳ ଚୁମ୍ବିତଂ ବାହୁଭ୍ୟାଂ ପରିରମ୍ଭିତମ୍ ।**
**ପାଦାଭ୍ୟାଂ ପରିବେଷ୍ଟିତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୬୦।**

ଯିଏ ନିକୁଞ୍ଜରେ ଶୟନ କାଳରେ ଶ୍ରୀମତୀ କିଶୋରୀମଣି ରାଧାଙ୍କର କପୋଳ ଚୁମ୍ବନ କରି ବାହୁଦ୍ୱୟଦ୍ୱାରା ପରିରମ୍ଭଣ କରି ଏବଂ ଚରଣଦ୍ୱୟ ଦ୍ୱାରା ପରିବେଷ୍ଟନ କରିଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ରାଧିକାହୃଦୟାନ୍ତଗଂ ନୀଳରତ୍ନମହୋଜ୍ଜ୍ୱଳମ୍ ।**
**ନିଦ୍ରାମୁଦ୍ରିତ ଲୋଚନଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୬୧।**

ଯିଏ ଶ୍ରୀମତୀ ନିକୁଞ୍ଜେଶ୍ୱରୀଙ୍କର ହୃଦୟାନ୍ତର୍ଗତ ମହାଉଜ୍ଜ୍ୱଳ ନୀଳରତ୍ନ ଏବଂ ନିଦ୍ରାବେଶରେ ଯାହାର ଲୋଚନ ଦୁଇଟି ଈଷତ୍ ମୁଦ୍ରିତ ହୋଇଯାଇଛି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଶ୍ୟାମମାଲିଙ୍ଗିତ ଶ୍ୟାମା ଶ୍ୟାମାଲିଙ୍ଗିତଶ୍ୟାମଳମ୍ ।**
**ନିକୁଞ୍ଜ ତଳ୍ପ ମଧ୍ୟସ୍ଥଂ ସ୍ମରାମିଶ୍ୟାମସୁନ୍ଦରମ୍ ।୬୨।**

ଶ୍ରୀ ଶ୍ୟାମଳକର୍ତ୍ତୃକ ଆଲିଙ୍ଗିତ ଶ୍ୟାମା ଏବଂ ଶ୍ରୀମତୀ ଶ୍ୟାମାକର୍ତ୍ତୃକ ଶ୍ୟାମଳ ଆଲିଙ୍ଗିତ ହୋଇ ନିକୁଞ୍ଜ ମଧ୍ୟରେ ତଳ୍ପର ମଧ୍ୟସ୍ଥଳରେ ଶୟନକାରୀ ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଶ୍ୟାମେନ ଶୋଭିତା ରାଧା ରାଧାଶୋଭିତ ଶ୍ୟାମଳମ୍ ।**
**ବିସୀନୀ ଶଯ୍ୟାଶାୟିନଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୬୩।**

ଶ୍ରୀମାନ୍ ଶ୍ୟାମସୁନ୍ଦର କର୍ତ୍ତୃକ ଶୋଭିତା ଶ୍ରୀମତୀ ରାଧା ଏବଂ ଶ୍ରୀମତୀରାଧିକା କର୍ତ୍ତୃକ ସୋଭିତ ଶ୍ୟାମଳ, ଏଇରୂପେ ପରସ୍ପର ଶୋଭାତିଶୟ ବର୍ଦ୍ଧନ କରି ଶତଦଳ ଶୟନୀରେ ଯିଏ ଶୟନ କରିଅଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ସୁବର୍ଣ୍ଣ ଲତିକାଯୁକ୍ତଂ ନବତମାଳ ସନ୍ନିଭମ୍ ।**
**ରାଧିକା ବାହୁବେଷ୍ଟିତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୬୪।**

ଯିଏ ନିକୁଞ୍ଜ ଶୟନୀରେ ପ୍ରସୁପ୍ତା ଶ୍ରୀମତୀ ରାଧିକାଙ୍କର ବାହୁଲତା ଦ୍ୱାରା ବେଷ୍ଟିତ ହୋଇ ସୁବର୍ଣ୍ଣ ଲତିକାଯୁକ୍ତ ନବୀନ ତମାଳ ସମାନ ଶୋଭାପାଉଛନ୍ତି ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ପରିକ୍ଷୀଣେ ତୁ ଯାମିନ୍ୟଂ ନିଦ୍ରାଗଞ୍ଜିତ ଲୋଚନମ୍ ।**
**ଜୃମ୍ଭନ୍ତଂ ଶୋଭିତାସ୍ୟଞ୍ଚ ସ୍ମରାମି ଶ୍ୟାମସୁନ୍ଦରମ୍ ।୬୫।**

ଯାମିନୀ ପରିକ୍ଷୀଣ ଅର୍ଥାତ୍ ନିଶାନ୍ତ କାଳରେ ଯାହାର ଲୋଚନଦ୍ୱୟ ନିଦ୍ରାରେ ଗଞ୍ଜିତ ଅର୍ଥାତ୍ ଅଭିଭୂତ, ବଦନ କମଳ ଜୃମ୍ଭଣ (ହାଇ) ଦ୍ୱାରା ସୁଶୋଭିତ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ନିଦ୍ରା ମିଳିତ ଲୋଚନ ରାଧାବଦନ ପଙ୍କଜାତ୍ ।**
**ଅପସାରିତ କୁନ୍ତଳଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୬୬।**

ରଜନୀ ଶେଷେ ନିଦ୍ରା ଅପଗତ ହେଲେ ଆଳସ୍ୟଭରେ ନିଦ୍ରାମିଳିତ ନୟନା ଶ୍ରୀମତୀ ରାଧାରାଣୀଙ୍କର ବଦନ ପଙ୍କଜ ଉପରୁ ମଧୁକର ସଦୃଶ

ଚୂର୍ଣ୍ଣ କୁନ୍ତଳଗୁଡ଼ିକୁ ଅପସାରିତ କରୁଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ବହୁଭ୍ୟାଂ ପରିରମ୍ଭିତାମାଳସ୍ୟଭର ରାଧିକାମ୍ ।**
**ଚୁଚୁମ୍ବ ବଦନାମ୍ଭୋଜଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୬୭।**

ଯିଏ ନିଦ୍ରାଳସ୍ୟପୂର୍ଣ୍ଣା ଶ୍ରୀମତୀ ରାଧିକାଙ୍କୁ ବାହୁଦ୍ୱୟ ଦ୍ୱାରା ପରିରମ୍ଭଣ ଏବଂ ବଦନ କମଳରେ ଚୁମ୍ବନ ପ୍ରଦାନ କରୁଛନ୍ତି, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ବିଚ୍ୟୁତ ବାସଭୂଷଣାଂ ମଦାଳସିତ ରାଧିକାମ୍ ।**
**ଶଯ୍ୟାୟାଂସ୍ଥାପିତାଂଯାଂ ତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୬୮।**

ଅନଙ୍ଗ ସମରରେ ବିଚ୍ୟୁତ-ବିଗଳିତ ବସନ-ଭୂଷଣା ଶ୍ୟାମରସେ ଆଳସ୍ୟ ଯୁକ୍ତା ଯେଉଁ ଶ୍ରୀମତୀ ରାଧିକା ତାହାଙ୍କୁ ଯିଏ ନିକୁଞ୍ଜ ମଝିରେ ଶଯ୍ୟା ଉପରେ ସ୍ଥାପନ ଅର୍ଥାତ୍ ବସାଇଲେ, ସେହି ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ବକ୍ଷେଃ କଞ୍ଚୁଲିକା ଯସ୍ୟଃ କଟୌ ଚ ନୀଳଶାଟିକାମ୍ ।**
**ହାରଂ ତାରାବଳୀ କଣ୍ଠେ ସୀମନ୍ତେ ଶୁଭସିନ୍ଦୁରମ୍ ।୬୯।**

ଅତଃ ପର ଅଖିଳକାମକଳାଗୁରୁ ଶିରୋମଣି ଶ୍ରୀବ୍ରଜଯୁବରାଜ ସ୍ୱାଧୀନ ଭର୍ତ୍ତୃକା ଶ୍ରୀମତୀ ରାଧିକାଙ୍କର ବେଶ ରଚନା କରୁଛନ୍ତି - ଶ୍ରୀମତୀଙ୍କର ବକ୍ଷରେ ସୁନ୍ଦର କଞ୍ଚୁଳିକା, କ୍ଷୀଣ କଟିତଟେ ନୀଳ ଶାଟିକା, କଣ୍ଠେ ତାରାବଳୀ ହାର ଏବଂ ସୀମନ୍ତ ପ୍ରଦେଶରେ ଶୁଭସିନ୍ଦୂର ପ୍ରଦାନ କରୁଛନ୍ତି ।

**ତାମ୍ବୁଳରାଗମୌଷ୍ଟେ ଚ କରେ ନବୀନମଲ୍ଲିକାମ୍ ।**
**ଚିବୁକେ କସ୍ତୁରୀ ବିନ୍ଦୁଂ ନୟନେ ନବ କଜ୍ଜଳମ୍ ।୭୦।**

ଓଷ୍ଠଦେଶରେ ତାମ୍ବୁଳରାଗ, ବେଣୀରେ ନବୀନ ମଲ୍ଲିକା କୁସୁମର ମାଳା, ଚିବୁକରେ କସ୍ତୁରୀ ବିନ୍ଦୁ ଏବଂ ଲୋଚନରେ ନବୀନ କଜ୍ଜଳ ପ୍ରଦାନ କଲେ ।

**କପୋଳେ ଚିତ୍ରକଂ ରମ୍ୟଂ ଚିତ୍ରକଂ କୁଚକୁମ୍ଭୟୋଃ ।**
**ପାଦୟୋର୍ନୂପୁରୌ ଦିବ୍ୟୈ ବାହ୍ୱୋଷ୍ଟ କନକାଙ୍ଗଦ୍ୟୈ ।୭୧।**

କପୋଳଦ୍ୱୟ ଓ କୁଚକୁମ୍ଭ ଯୁଗଳରେ ରମଣୀୟଚିତ୍ରକ, ଶ୍ରୀଚରଣ ଯୁଗଳରେ ଦିବ୍ୟନୂପୁର ଏବଂ ବାହୁଦ୍ୱୟରେ ସୁବର୍ଣ୍ଣ ରଚିତ ଅଙ୍ଗଦ ପ୍ରଦାନ କଲେ ।

**ଶଙ୍ଖୈ୍ୟ ଚ ମଣି ଚୂଡକୌ ଲଳିତକରଯୁଗ୍ମୟୋଃ ।**
**ଜାମ୍ବୁନଦ ବିନିର୍ମ୍ମିତୈ୍ୟ ରତ୍ନହିରକ ଜଡ଼ିତୈ୍ୟ ।୭୨।**

ସୁଲଳିତ କରଯୁଗଳରେ ଶ୍ୱେତବର୍ଣ୍ଣ ଶଙ୍ଖଯୁଗଳ ଏବଂ ରତ୍ନହୀରକାଦି ବିଜଡ଼ିତ ଜାମ୍ବୁନଦ ହୋମ ବିନିର୍ମିତ ମଣି ଚୂଡ଼ି ପ୍ରଦାନ କଲେ ।

**ଅଙ୍ଗୁଳିଷ୍ୱଙ୍ଗୁରୀୟକଂ ପାଦୟୋର୍ଯାବକଂ ଶୁଭମ୍ ।**
**ନାଶାୟାଂ ଗଜମୌକ୍ତିକଂ ସୀମନ୍ତେମଣି ଚନ୍ଦ୍ରିକା ।୭୩।**

ଅଙ୍ଗୁଳୀ ସକଳରେ ହୀରକଜଡ଼ିତ ମୁଦ୍ରିକା, ପାଦଯୁଗଳରେ ସୁନ୍ଦର ଲାକ୍ଷାରସ ବା ଅଳତା, ନାସିକାରେ ଗଜମୌକ୍ତିକ ଯୁକ୍ତ ବେଶର, ସୀମନ୍ତରେ ମଣିଚନ୍ଦ୍ରିକା ପ୍ରଦାନ କଲେ ।

**କର୍ଣ୍ଣୟୋର୍ଦିବ୍ୟକୁଣ୍ଡଳେ ତ୍ରପାନମିତଲୋଚନାମ୍ ।**
**ଶ୍ୟାମରସାବ୍ଧିମଗ୍ନା ଚ ଶ୍ୟାମବାମଙ୍ଗଶୋଭିତାମ୍ ।୭୪।**

କର୍ଣ୍ଣଯୁଗଳରେ ଦିବ୍ୟକୁଣ୍ଡଳ ଶୋଭିତହେଲେ, ଶ୍ୟାମରସାବ୍ଧି ନିମଗ୍ନ ଲଜ୍ଜାଭରେ ଅବନମିତ ଲୋଚନା ଶ୍ରୀମତୀ ରାଧା ଶ୍ରୀଶ୍ୟାମସୁନ୍ଦରଙ୍କର ବାମାଙ୍ଗ ଶୋଭାବର୍ଦ୍ଧନ କରିଲେ ।

**ଇତି ବିଭୂଷିତା ରାଧା ବାହୁନାଲିଙ୍ଗିତସ୍ତୁ ସଃ ।**
**କୁଞ୍ଜେ ବିରାଜତେ ସଦା ଜୟତି ଶ୍ୟାମସୁନ୍ଦରଃ ।୭୫।**

ଶ୍ରୀ ଶ୍ୟାମସୁନ୍ଦର କର୍ତ୍ତୃକ ଶ୍ରୀମତୀ ରାଧା ଏହି ପ୍ରକାରରେ ବିଭୂଷିତା ହେଲେ ଶ୍ରୀକୃଷ୍ଣକର୍ତ୍ତୃକ ବାହୁଦ୍ୱାରା ଆଲିଙ୍ଗିତ ହୋଇ ନିକୁଞ୍ଜ ମଧ୍ୟରେ ସର୍ବଦା ବିରାଜିତ ହେଉଛନ୍ତି । ସେହି ଶ୍ରୀଶ୍ୟାମସୁନ୍ଦର ଜୟଯୁକ୍ତ ହୁଅନ୍ତୁ ।

**ଦିବ୍ୟେ ବୃନ୍ଦାବନେ ରମ୍ୟେ ଗୋ-ଗୋପୀ ପରିବେଷ୍ଟିତମ୍ ।**
**ରାଧିକାଳୀ ବୃତଂ ସେବ୍ୟଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୭୬**

ଯିଏ ଚିନ୍ମୟ ରମଣୀୟ ଶ୍ରୀଧାମ ବୃନ୍ଦାବନରେ ଗୋସକଳ ଏବଂ ଗୋପୀବୃନ୍ଦକର୍ତ୍ତୃକ ପରିବେଷ୍ଟିତ ହୋଇ, ଶ୍ରୀମତୀ ରାଧିକାଙ୍କର ଲଳିତାଦି ସଖୀଗଣ ଅତି ନିକଟରେ ଆବରଣ କରି ସେବା କରୁଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଯସ୍ୟବେଣୁରବଂ ଶ୍ରୁତ୍ୱା କୃଷ୍ଣା-କଳିନ୍ଦନନ୍ଦିନୀ ।**
**ତରଙ୍ଗୋଚ୍ଛଳିତାଭୂତ୍ତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୭୭।**

ଯାହାର ସର୍ବଭୂତ ମନୋହର ବେଣୁରବ ଶ୍ରବଣ କରି କଳିନ୍ଦନନ୍ଦିନୀ ଶ୍ରୀମତୀ କୃଷ୍ଣା (ଯମୁନା) ତରଙ୍ଗସମୂହ ଦ୍ୱାରା ଉଚ୍ଛଳିତା ହୋଇଥିଲେ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଯସ୍ୟ ବେଣୁନିନାଦେନ ସ୍ଥାବରୋଜଙ୍ଗମାୟିତମ୍ ।**
**ଜଙ୍ଗମଃ ସ୍ଥାବରୋଽଭୂତ୍ତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୭୮।**

ଯାହାର ବେଣୁ ନିନାଦ ଶ୍ରବଣ କରି ବୃକ୍ଷାଦି ସ୍ଥାବର ସକଳ ଜଙ୍ଗମର ଆଚରଣ ଅର୍ଥାତ୍ ସଚଳ ହୋଇଯାଇଥିଲେ ଏବଂ ଜଙ୍ଗମ ମାନବ ପଶୁପକ୍ଷୀ ଯମୁନାଦି ସ୍ଥାବରତ୍ୱ ବା ଗତିଶକ୍ତିରହିତ ହୋଇଥିଲେ, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ମୁରଲୀନିସ୍ୱନଂ ଯସ୍ୟ ସଂଶ୍ରୁତ୍ୟ ବ୍ରଜ ଗୋପୀକା ।**
**ଗେହାଦି ବିସ୍ମୃତାଭୂତ୍ତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୭୯।**

ଯାହାର ମୁରଲୀ ରବ ଶ୍ରବଣ କରି ବ୍ରଜଗୋପିକାବୃନ୍ଦ ଦେହଗେହାଦି ବିସ୍ମୃତ ହୋଇଯାଇଥିଲେ, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଅପାଙ୍ଗ ବୀକ୍ଷଣଂ ଯସ୍ୟ କନ୍ଦର୍ପ-ଦର୍ପ ଖଣ୍ଡନମ୍ ।**
**ଦଳନଂ ଲଳନା-ଧୈର୍ଯ୍ୟଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୮୦।**

ଯାହାର କଟାକ୍ଷଯୁକ୍ତ ଅବଲୋକନ କନ୍ଦର୍ପର ଦର୍ପ ଖଣ୍ଡନ କରେ ଏବଂ ପତିବ୍ରତା ଲଳନାଗଣଙ୍କର ଧୈର୍ଯ୍ୟକୁ ମଧ୍ୟ ଦଳନ କରନ୍ତି, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଯସ୍ୟାଙ୍ଗସୌରଭାକୃଷ୍ଟା ନାରାୟଣାଙ୍କଶାୟିନୀ -**
**ଚଚାର ଦୁଷ୍କରଂ ତପଃ ସ୍ମରାମି ଶ୍ୟାମସୁନ୍ଦରମ୍ ।୮୧।**

ଯାହାର ଅଙ୍ଗସୌରଭରେ ଆକୃଷ୍ଟା ହୋଇ ବୈକୁଣ୍ଠାଧିପତି ନାରାୟଣଙ୍କର ଅଙ୍କ ପଲଙ୍କ ବିମଣ୍ଡିତା ଶ୍ରୀଦେବୀ ଦୁଷ୍କର ତପସ୍ୟାରତ ଅଛନ୍ତି । ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଚଞ୍ଚଳଂ ଲୋଚନଂ ଯସ୍ୟ ଖଞ୍ଜନ ନୃତ୍ୟ ଗଞ୍ଜନମ୍ ।**
**ବ୍ରଜସ୍ତ୍ରୀ ଦିବ୍ୟ ସାୟକଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୮୨।**

ଯାହାର ଚଞ୍ଚଳ ନୟନ ଯୁଗଳ ଖଞ୍ଜନ ପକ୍ଷୀର ନୃତ୍ୟକୁ ମଧ୍ୟ ବିଡ଼ମ୍ବିତ କରେ, ବ୍ରଜସ୍ତ୍ରୀ ଜନମାନଙ୍କ ପାଇଁ କାମଦେବଙ୍କର ବାଣ ସଦୃଶ । ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଈଷତ୍‌ସ୍ମିତାମୃତାଲିପ୍ତଂ ଗଣ୍ଡଂ ତାମ୍ବୁଲପୂରିତମ୍ ।**
**ରାଧିକା ସୁଷ୍ଟୁ ଚୁମ୍ବିତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୮୩।**

ଯାହାର ସୁଚାରୁ ଗଣ୍ଡଦେଶ ଈଷତ୍‌ସ୍ମିତରୂପ ଅମୃତଦ୍ୱାର ପ୍ରଲିପ୍ତ ଏବଂ ତାମ୍ବୁଳ ବିଟିକାପୂର୍ଣ୍ଣ, ତଥା ଶ୍ରୀମତୀ ରାଧିକାକୃତ ସୁନ୍ଦରଭାବେ ଚୁମ୍ବିତ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ବଦନାମୃତ ପୂରେଣ ବେଣୁରନ୍ଧ୍ରଂ ପ୍ରପୂରିତମ୍ ।**
**ମୁଦିତଂ ବ୍ରତ ଯୌବତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୮୪।**

ଯିଏ ନିଜ ବଦନାମୃତ ପୂରର ରସ ବିଶେଷର ଦ୍ୱାରା ବେଣୁ ରନ୍ଧ୍ରପରି ପୂର୍ଣ୍ଣୀତ କରି ବ୍ରଜ ଯୁବତୀବୃନ୍ଦଙ୍କୁ ଆନନ୍ଦିତ କରନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ହରି ଚନ୍ଦନ ଭୂଷିତମଳକାକୁଳ ଶୋଭିତମ୍ ।**
**ଲଲାଟପଟଳଂ ଯସ୍ୟ ସ୍ମରାମି ଶ୍ୟାମସୁନ୍ଦରମ୍ ।୮୫।**

ଯାହାର ରମଣୀୟ ଲଲାଟ ପ୍ରଦେଶ ଅଳକା ସମୂହରେ ସୁଶୋଭିତ ଏବଂ ହରି ଚନ୍ଦନ ଦ୍ୱାର ବିଭୂଷିତ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଆପାଦ ଲମ୍ବିତଂ ଦିବ୍ୟଂ ତୁଳସୀଦାମ ଶୋଭିତମ୍ ।**
**କରଂ ବଂଶୀବିଭୂଷିତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୮୬।**

ଯାହାର ଆପାଦ ଲମ୍ବିତ ଦିବ୍ୟ ତୁଳସୀପତ୍ର ମଞ୍ଜରୀ ଦ୍ୱାରା ନିର୍ମିତ ମାଳା ଶୋଭାପାଉଛି ଏବଂ କରକମଳରେ ବଂଶୀ ବିଭୂଷିତ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁଛି ।

**କର୍ଣ୍ଣିକାରଂ ଶ୍ରୁତ୍ୟୈ ଯସ୍ୟ ସର୍ବାଙ୍ଗେ ହରିଚନ୍ଦନମ୍ ।**
**ଗଣ୍ଡଂ ଗୋ-ରଜସା ପାଣ୍ଡୁଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୮୭।**

ଗୋଚାରଣ ସମୟରେ ଯାହାର ଶ୍ରବଣ ଯୁଗଳରେ କର୍ଣ୍ଣିକା କର୍ଣ୍ଣଭୂଷଣ ବିଶେଷ, (ପୀତି ବର୍ଣ୍ଣ ପୁଷ୍ପ ବିଶେଷ ବା କନିଅର ପୁଷ୍ପ ଅଥବା ପଦ୍ମର ମଧ ଭାଗ) ସର୍ବାଙ୍ଗେ ହରିଚନ୍ଦନ ବିଭୂଷିତ ଓ ଗଣ୍ଡଦ୍ୱୟ ଗୋ-ରଜଦ୍ୱାରା ପାଣ୍ଡୁ ବର୍ଣ୍ଣ ହୋଇଅଛି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଗୋପୀନେତ୍ରାବ୍ଜ ପୂଜିତଂ ରାଧାକରାବ୍ଜ ଲାଳିତମ୍ ।**
**ବୈଜୟନ୍ତୀ ସୁଶୋଭିତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୮୮।**

ଯିଏ ଶ୍ରୀ ବ୍ରଜଗୋପୀଗଣଙ୍କର ନୟନକମଳ ଦ୍ୱାରା ପୂଜିତ, ଶ୍ରୀମତୀ ରାଧିକାଙ୍କର କରସରୋରୁହ ଦ୍ୱାରା ସର୍ବଦା ଲାଳିତ ଏବଂ ଯାହାର ଗଳାରେ ବୈଜୟନ୍ତୀ ମାଳା ସୁଶୋଭିତ ହେଉଛି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଛି ।

**ସୁରଭି ଚାରଣେ ବ୍ୟଗ୍ରଂ ଗୋବର୍ଦ୍ଧନନିବାସିନମ୍ ।**

**ମୟୂର ପୁଚ୍ଛଶୋଭିତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୮୯।**

ଯିଏ ସୁରଭି ଚାରଣ ପାଇଁ ସାତିଶୟ ବ୍ୟଗ୍ର, ଗୋବର୍ଦ୍ଧନ କନ୍ଦରରେ ନିବାସକାରୀ, ମସ୍ତକରେ ନବୀନ ମୟୂରପୁଚ୍ଛ ଶୋଭାପାଉଛି, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଦିବ୍ୟେ ଶ୍ରୀରାଧିକାକୁଣ୍ଡେ ରାଧିକାଲିଗଣୈର୍ବୃତମ୍ ।**

**ଜଳକ୍ରୀଡ଼ା ସମାସକ୍ତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୯୦।**

ଯିଏ ପରମରମଣୀୟ ଦିବ୍ୟଶ୍ରୀ ରାଧିକାକୁଣ୍ଡରେ ଶ୍ରୀମତୀ ରାଧିକା ଓ ଲଳିତାଦି ସଖୀବୃନ୍ଦ ପରିବୃତ୍ତ ହୋଇ ଜଳକ୍ରୀଡ଼ାରେ ଅତିଶୟ ଆଶକ୍ତ ହୁଅନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଭୀମ ସଲିଳ ସଂଗ୍ରାମେ ରାଧିକୟାପରାଜିତମ୍ ।**

**ରାଜିତଂ ସଖୀଭିଃ ସାର୍ଦ୍ଧଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୯୧।**

ଯିଏ ଭୀଷଣ ସଲିଳ ସଂଗ୍ରାମରେ ଶ୍ରୀମତୀ ରାଧିକାକୃତ ପରାଜିତ ହୋଇ ଶ୍ରୀଲଳିତାଦି ସଖୀଗଣଙ୍କ ସହିତ ଶୋଭାପାଉଛନ୍ତି, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ହିନ୍ଦୋଳାନ୍ଦୋଳନେ ଭୀତରାଧାଲିଙ୍ଗିତ ବିଗ୍ରହମ୍ ।**

**ଦୋଳିତଂ ଲଳିତାଦିଭିଃ ସ୍ମରାମି ଶ୍ୟାମସୁନ୍ଦରମ୍ ।୯୨।**

ଯିଏ ହିନ୍ଦୋଳଲୀଳା ସମୟରେ ହିନ୍ଦୋଳାର ଆନ୍ଦୋଳନେ ଅତୀବ ଭୀତା ଶ୍ରୀମତୀ ରାଧାକୃତା ଆଲିଙ୍ଗିତ ହୋଇ ଶ୍ରୀଲଳିତାଦି ସଖୀବୃନ୍ଦ କୃତ ପୁନଃ ପୁନଃ ଆନ୍ଦୋଳିତ ହେଉଛନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଅନଙ୍ଗାମ୍ବୁଜ କୁଞ୍ଜେ ଚ ହ୍ୟକ୍ଷକ୍ରୀଡ଼ାପରାୟଣମ୍ ।**

**ରାଧିକୟା ପରାଜିତଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୯୩।**

ଯିଏ ଶ୍ରୀ ରାଧାକୁଣ୍ଡସ୍ଥ ଅନଙ୍ଗାମ୍ବୁଜ କୁଞ୍ଜ ମଧ୍ୟରେ ଶ୍ରୀମତୀଙ୍କ ସହ ପାଶକ କ୍ରୀଡ଼ାପରାୟଣ ହେଲେ । ଶ୍ରୀମତୀ ରାଧାରାଣୀଙ୍କ ଦ୍ୱାରା ପରାଜିତ ହୁଅନ୍ତି, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ରାଧିକାଂସାର୍ପିତଂ ଭୁଜଂ ବେଣୁବାଦ୍ୟପରାୟଣମ୍ ।**
**ରାସମଣ୍ଡଳ ମଧ୍ୟସ୍ଥଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୯୪।**

ଯିଏ ଶ୍ରୀରାଧାକୁଣ୍ଡସ୍ଥ ରାସମଣ୍ଡଳର ମଧ୍ୟରେ ଅବସ୍ଥାନ କରି ଶ୍ରୀମତୀରାଧାଙ୍କର ସ୍କନ୍ଧ ପ୍ରଦେଶରେ ଭୁଜ ସମର୍ପଣକରତଃ ବେଣୁବାଦ୍ୟପରାୟଣ ହୁଅନ୍ତି । ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ରାସକେଳୀ ପରିଶ୍ରାନ୍ତଂ ଦିବ୍ୟରତ୍ନାସନାଶ୍ରିତମ୍ ।**
**ସମାଲିଙ୍ଗିତ ରାଧିକଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୯୫।**

ଯିଏ ରାସକେଳୀ ଅବସରରେ ପରିଶ୍ରାନ୍ତ ହୋଇ ଦିବ୍ୟ ରତ୍ନ ସିଂହାସନରେ ଶ୍ରୀରାରଧାକର୍ତ୍ତୃକ ସମାଲିଙ୍ଗିତ ହୋଇ ଉପବେଶନ କରନ୍ତି, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ପ୍ରିୟନର୍ମ ସଖୀବୃନ୍ଦୈଃ ସର୍ବତଃ ସଦାସେବିତମ୍ ।**
**ନର୍ମବାକ୍ୟପରାୟଣଂ ସ୍ମରାମି ଶ୍ୟାମସୁନ୍ଦରମ୍ ।୯୬।**

ଯିଏ ପ୍ରିୟ ନର୍ମ ସଖୀବୃନ୍ଦ କୃତ ସର୍ବତୋଭାବେ ସର୍ବଦା ସେବିତ ହୁଅନ୍ତି ଏବଂ ଶ୍ରୀସଖୀଗଣଙ୍କର ସହିତ ନର୍ମବାକ୍ୟ ପରାୟଣ, ସେହି ଶ୍ରୀସଖୀଗଣଙ୍କର ସହିତ ନର୍ମବାକ୍ୟପରାୟଣ, ସେହି ଶ୍ରୀଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**କୋଟି କାମବିମର୍ଦ୍ଦକଃ ସୌନ୍ଦର୍ଯ୍ୟାମୃତ ବିନ୍ଦୁନା ।**
**ରାଧିକାଲିଙ୍ଗନାଙ୍ଗକୋ ଜୟତିଶ୍ୟାମସୁନ୍ଦରଃ ।୯୭।**

ଯାହାର ସୌନ୍ଦର୍ଯ୍ୟାମୃତ ସାଗରର ଗୋଟିଏ ବିନ୍ଦୁ କୋଟି କୋଟି କାମଦେବଙ୍କର ଗର୍ବକୁ ବିମର୍ଦ୍ଦନ କରେ, ସେହି ରାଧାଲିଙ୍ଗିତ ଶ୍ରୀବିଗ୍ରହ ଶ୍ରୀଶ୍ୟାମସୁନ୍ଦରଙ୍କର ଜୟ ହେଉ ।

**ଶ୍ୟାମାବୃନ୍ଦୈରୁପାସିତଂ ଶ୍ୟାମାନନ୍ଦେନ ପୂଜିତମ୍ ।**
**ଶ୍ୟାମାନନ୍ଦ ପ୍ରଦାୟକଂ ସ୍ମରାମିଶ୍ୟାମସୁନ୍ଦରମ୍ ।୯୮।**

ଯିଏ ଶ୍ୟାମାବୃନ୍ଦ ଅର୍ଥାତ୍ ନବଯୁବତୀଗୋପୀବୃନ୍ଦ କୃତ ଉପାସିତ, ଶ୍ରୀ ପ୍ରଭୁ ଶ୍ରୀଶ୍ୟାମାନନ୍ଦଦେବ କର୍ତ୍ତୃକ ପୂଜିତ ଏବଂ ଶ୍ରୀଶ୍ୟାମାଗଣଙ୍କର ଆନନ୍ଦ ପ୍ରଦାୟକ, ସେହି ଶ୍ରୀ ଶ୍ୟାମସୁନ୍ଦରଙ୍କୁ ମୁଁ ସ୍ମରଣ କରୁଅଛି ।

**ଯଃ ପଠତି ବୃନ୍ଦାବନେ ଶ୍ୟାମସୁନ୍ଦର ସନ୍ନିଧୌ ।**
**ସ୍ମରନ୍ ତସ୍ୟ ପାଦାବ୍ଜଂ ସୋ ଭବତି ତସ୍ୟ ସେବକଃ ।୯୯।**

ଯେ ବ୍ୟକ୍ତି ଶ୍ରୀଧାମ ବୃନ୍ଦାବନରେ ଶ୍ରୀଶ୍ୟାମସୁନ୍ଦରଦେବଙ୍କର ସନ୍ନିକଟରେ ତାଙ୍କର ପାଦପଦ୍ମ ସ୍ମରଣ କରି ପାଠ କରନ୍ତି, ସେହି ସାଧକ ଶ୍ରୀଶ୍ୟାମସୁନ୍ଦରଙ୍କର ସେବକତ୍ୱ ପ୍ରାପ୍ତ ହେବ ।

**ଦିବ୍ୟ ବୃନ୍ଦାବନେ ରମ୍ୟେ ନିକୁଞ୍ଜ ତଳ୍ପ ମନ୍ଦିରେ ।**
**ନିଶ୍ଚିତଂ ଲଭତେ ଦାସ୍ୟଂ ପଠନ୍ନାତ୍ରସଂଶୟଃ ।୧୦୦।**

ଏହି ଶତକପାଠଦ୍ୱାରା ପରମ ରମଣୀୟ ଦିବ୍ୟ ଶ୍ରୀବୃନ୍ଦାବନରେ ନିକୁଞ୍ଜ ଶୟନ ମନ୍ଦିରରେ ନିଶ୍ଚିତ ହିଁ ଦାସ୍ୟ ଲାଭ କରିବେ, ଏହି ବିଷୟରେ କୌଣସି ସଂଶୟ ନାହିଁ ।

ଧୀର ଲଳିତ-କୃଷ୍ଣସ୍ୟ ରାଧାଧୈର୍ଯ୍ୟ-ବିଦାରକୈ-
ର୍ଗୁଣୈଃ ଶ୍ରୀଶତକଂ ଦିବ୍ୟଂ ବେଦାନ୍ତତୀର୍ଥ ନିର୍ମିତମ୍ ।୧୦୧।

ଧୀର ଲଳିତ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଯେଉଁ ଶ୍ରୀମତୀ ରାଧିକାଙ୍କର ଧୈର୍ଯ୍ୟ ବିଦାରଣକାରୀ ଗୁଣବୃନ୍ଦ ଅଛି ତାହାଦ୍ୱାରା ବେଦାନ୍ତତୀର୍ଥ ନାମେ କୌଣସି ବ୍ୟକ୍ତି ଏହି ଦିବ୍ୟ ଶ୍ରୀଶ୍ୟାମସୁନ୍ଦର ଶତକ ସ୍ତୋତ୍ରଟି ନିର୍ମାଣ କରିଅଛନ୍ତି ।

॥ ଜୟ ଶ୍ରୀ ରାଧେ ॥

*୧୩୯୬ ତମେ ବଙ୍ଗୀୟ ବର୍ଷସ୍ୟ ଆଶ୍ୱିନମାସସ୍ୟ*
*ବିଂଶତି ଦିନାଙ୍କେ ଗୁରୁବାସରେ ଶ୍ରୀରାଧାକୁଣ୍ଡ ନିବାସିନା*
*ଶ୍ରୀମଦାନନ୍ଦଗୋପାଳବେଦାନ୍ତ ତୀର୍ଥେନ*
*ବିଦ୍ୟାଲଙ୍କାରେଣ ବିରଚିତଂ*
*ଶ୍ରୀଶ୍ୟାମସୁନ୍ଦର ଶତକଂ ସମ୍ପୂର୍ଣ୍ଣମ୍ ।*





ଶ୍ରୀ ଶ୍ୟାମାନନ୍ଦପ୍ରଭୁ ସେବିତ ରାଧାଶ୍ୟାମସୁନ୍ଦର ଜୀଉ

ଶ୍ରୀ ଶ୍ରୀ ଗୌରାଙ୍ଗପାର୍ଷଦ
ଶ୍ରୀଲ ବାସୁଦେବ ସାର୍ବଭୌମଭଟ୍ଟାଚାର୍ଯ୍ୟ ବିରଚିତଂ ସ୍ତବାବଳୀ

# ଶ୍ରୀ ଶ୍ରୀ ଶଚୀ-ତନୟାଷ୍ଟକମ୍

ଉଜ୍ଜ୍ୱଳ-ବରଣ-ଗୌରବର-ଦେହଂ
ବିଳସତି ନିରବଧି ଭାବ-ବିଦେହଂ ।
ତ୍ରିଭୁବନ-ପାବନଂ କୃପୟାଃ ଲେଶଂ
ତଂ ପ୍ରଣମାମି ଚ ଶ୍ରୀ ଶଚୀତନୟମ୍ ।୧।

ଗଦଗଦ-ଅନ୍ତର-ଭାବ ବିକାରଂ
ଦୁର୍ଜ୍ଜନ-ତର୍ଜ୍ଜନ-ନାଦ-ବିଳାସମ୍ ।
ଭବ ଭୟ-ଭଞ୍ଜନ-କାରଣ-କରୁଣଂ
ତଂ ପ୍ରଣମାମି ଚ ଶ୍ରୀଶଚୀତନୟମ୍ ।୨।

ଅରୁଣାମ୍ବର-ଧର-ଚାରୁ-କପୋଳଂ
ଇନ୍ଦୁ-ବିନିନ୍ଦିତ ନଖଚୟ ରୁଚିରମ୍ ।
ଜଳ୍ପିତ ନିଜଗୁଣ ନାମ-ବିନୋଦଂ
ତଂ ପ୍ରଣମାମି ଚ ଶ୍ରୀ ଶଚୀତନୟମ୍ ।୩।

ବିଗଳିତ-ନୟନ-କମଳ-ଜଳଧାରଂ
ଭୂଷଣ-ନବରସ-ଭାବ-ବିକାରମ୍ ।
ଗତି-ଅତି-ମନ୍ଥର ନୃତ୍ୟ-ବିଳାସଂ
ତଂ ପ୍ରଣମାମି ଚ ଶ୍ରୀ ଶଚୀତନୟମ୍ ।୪।

ଚଞ୍ଚଳ-ଚାରୁ-ଚରଣ-ଗତି-ରୁଚିରଂ
ମଞ୍ଜୀର-ରଞ୍ଜିତ ପଦଯୁଗ ମଧୁରମ୍ ।
ଚନ୍ଦ୍ର ବିନିନ୍ଦିତ ଶୀତଳ-ବଦନଂ
ତଂ ପ୍ରଣମାମି ଚ ଶ୍ରୀ ଶଚୀତନୟମ୍ ।୫।

ଧୃତ-କଟିଡ଼ୋର-କମଣ୍ଡଳୁ ଦଣ୍ଡଂ
ଦିବ୍ୟ-କଳେବର-ମୁଣ୍ଡିତ-ମୁଣ୍ଡଂ ।
ଦୁର୍ଜ୍ଜନ-କଲ୍ମଷ-ଖଣ୍ଡନ-ଦଣ୍ଡଂ
ତଂ ପ୍ରଣମାମି ଚ ଶ୍ରୀଶଚୀତନୟମ୍ ।୬।
ଭୂଷଣ-ଭୂରଜ-ଅଳକା-ବଳ୍ପିତଂ
କମ୍ପିତ-ବିମ୍ବାଧର-ବର-ରୁଚିରମ୍ ।
ମଳୟଜ-ବିରଚିତ-ଉଜ୍ଜ୍ୱଳ-ତିଳକଂ
ତଂ ପ୍ରଣମାମି ଶ୍ରୀଶଚୀତନୟମ୍ ।୭।
ନିନ୍ଦିତ-ଅରୁଣ-କମଳଦଳ-ଲୋଚନଂ
ଅଜାନୁଲମ୍ବିତ-ଶ୍ରୀଭୁଜ-ଯୁଗଳମ୍ ।
କଳେବର-କୈଶୋର-ନର୍ତ୍ତକ-ବେଶଂ
ତଂ ପ୍ରଣମାମି ଚ ଶ୍ରୀଶଚୀତନୟମ୍ ।୮।



# ଶ୍ରୀ ଶ୍ରୀ ଶଚୀ-ସୁତାଷ୍ଟକଂ-୨

ନବଗୌରବରଂ ନବପୁଷ୍ପଶରଂ
ନବଭାବଧରଂ ନବୋଲ୍ଲାସପରମ୍ ।
ନବହାସ୍ୟକରଂ ନବ ହେମବରଂ
ପ୍ରଣମାମି ଶଚୀସୁତ ଗୌରବରମ୍ ।୧।
ନବପ୍ରେମଯୁତ ନବନୀତ ଶୁଚଂ
ନବ ବେଶକୃତଂ ନବ ପ୍ରେମରସମ୍ ।
ନବଧା ବିଳାସଂ ସଦା ପ୍ରେମମୟଂ
ପ୍ରଣମାମି ଶଚୀସୁତ ଗୌରବରମ୍ ।୨।

ହରିଭକ୍ତି ପରଂ ହରିନାମଧରଂ
　　　　　　କରଜପ୍ୟକରଂ ହରିନାମପରମ୍ ।
ନୟନେ ସତତଂ ପ୍ରେମ-ସଂବିଶତଂ,
　　　　　　ପ୍ରଣମାମି ଶଚୀସୂତ ଗୌରବରମ୍ ।୩।
ଅନୁଦିନମିଦଂ ଭବତାପହରଂ,
　　　　　　ପରମାର୍ଥ ପରାୟଣ-ଲୋକଗତିମ୍ ।
ନବଲେହକରଂ ଜଗତ୍ତାପହରଂ,
　　　　　　ପ୍ରଣମାମି ଶଚୀସୂତ ଗୌରବରମ୍ ।୪।
ନିଜଭକ୍ତିକରଂ ପ୍ରିୟଚାରୁତରଂ,
　　　　　　ନଟ-ନର୍ତ୍ତନ ନାଗରୀ-ରାଜକୁଳଂ ।
କୁଳକାମିନୀ-ମାନସୋଲ୍ଲାସ୍ୟକରଂ,
　　　　　　ପ୍ରଣମାମି ଶଚୀସୂତ ଗୌରବରମ୍ ।୫।
କରତାଳବଳଂ ନୀଳକଣ୍ଠକରଂ,
　　　　　　ମୃଦଙ୍ଗ ରବାବ ସୁବୀଣା ମଧୁରମ୍ ।
ନିଜଭକ୍ତିଗୁଣାବୃତ ନାଟ୍ୟକରଂ,
　　　　　　ପ୍ରଣମାମି ଶଚୀସୂତ ଗୌରବରମ୍ ।୬।
ଯୁଗ ଧର୍ମଯୁତଂ ପୁନ ନନ୍ଦସୂତଂ,
　　　　　　ଧରଣୀ ସୁଚିତ୍ରଂ ଭବଭାବୋଚିତମ୍ ।
ତନୁଧ୍ୟାନଚିତ୍ରଂ ନିଜବାସଯୁତଂ,
　　　　　　ପ୍ରଣମାମି ଶଚୀସୂତ ଗୌରବରମ୍ ।୭।
ଅରୁଣ-ନୟନଂ ଚରଣ-ବସନଂ,
　　　　　　ବଦନେ ସ୍ଖଳିତଂ ସ୍ୱନାମ ମଧୁରମ୍ ।
କୁରୁତେ ସୁରସଂ ଜଗତଜୀବନଂ,
　　　　　　ପ୍ରାଣମାମି ଶଚୀସୂତ ଗୌରବରମ୍ ।୮। ❖

# ଶ୍ରୀ ଶ୍ରୀ ଗୌରାଷ୍ଟକମ୍

ମଳୟ-ସୁବାସିତ-ଭୂଷିତ-ଗାତ୍ରଂ
ମୂର୍ତ୍ତି-ମନୋହର-ବିଶ୍ୱ-ପବିତ୍ରମ୍ ।
ପଦନଖ-ରାଜିତ-ଲଜ୍ଜିତ-ଚନ୍ଦ୍ରେ
ଶୁଦ୍ଧ-କନକ-ଜୟ-ଗୌର-ନମସ୍ତେ ।୧।
ସ୍ୱଗାତ୍ର-ପୁଲକ-ଜଳ-ଲୋଚନପୂର୍ଣ୍ଣଂ
ଜୀବ-ଦୟାମୟ-ତାପ-ବିଦୀର୍ଣ୍ଣମ୍ ।
ସଂଖ୍ୟା-ଜଳ୍ପତି-ନାମ-ସହସ୍ରେ
ଶୁଦ୍ଧ-କନକ-ଜୟ ଗୌର ନମସ୍ତେ ।୨।
ହୁଙ୍କୃତ-ତର୍ଜ୍ଜନ-ଗର୍ଜ୍ଜନ-ରଙ୍ଗେ
ଚଞ୍ଚଳ-କଳିଯୁଗ ପାପ ସଶଙ୍କେ ।
ପଦ-ରଜ ତାଡ଼ିତ ଦୁଷ୍ଟ-ସମସ୍ତେ
ଶୁଦ୍ଧ-କନକ-ଜୟ-ଗୌର-ନମସ୍ତେ ।୩।
ସିଂହ-ଗମନ-ଜିତି-ତାଣ୍ଡବଲୀଳା
ଦୀନ-ଦୟାମୟ ତାରଣ-ଶୀଳା ।
ଅଜ-ଭବ-ବନ୍ଦିତ-ପଦ-ନଖ-ଚନ୍ଦ୍ରେ
ଶୁଦ୍ଧ-କନକ-ଜୟ ଗୌର-ନମସ୍ତେ ।୪।
ଗୌରାଙ୍ଗାବୃତ-ମାଳତୀ-ମାଳେ
ମେରୁ-ବିଲମ୍ବିତ-ଗଙ୍ଗା-ଧାରେ ।
ମନ୍ଦ-ମଧୁର-ହାସ-ଭାଷ-ମୁଖ-ଚନ୍ଦ୍ରେ
ଶୁଦ୍ଧ-କନକ-ଜୟ-ଗୌର-ନମସ୍ତେ ।୫।
ଫଲ୍‌ଗୁ-ବିରାଜିତ-ଚନ୍ଦନ-ଭାଲ
କୁଙ୍କୁମ-ରାଜିତ-ଦେହ-ବିଶାଳ ।

ଉମାପତି-ସେବିତ-ପଦ-ନଖ-ଚନ୍ଦ୍ରେ
ଶୁଦ୍ଧ-କନକ-ଜୟ-ଗୌୖର-ନମସ୍ତେ ।୬।

ଭକ୍ତି-ପରାଧୀନ-ଶାନ୍ତକ-ବେଶ
ଗମନ ସୂନର୍ତ୍ତକ-ଭୋଗ-ବିଶେଷ ।
ମାଳା-ବିରାଜିତ-ଦେହ-ସମସ୍ତେ
ଶୁଦ୍ଧ-କନକ-ଜୟ-ଗୌୖର-ନମସ୍ତେ ।୭।

ଭୋଗ-ବିରକ୍ତିଆ-ସନ୍ନ୍ୟାସୀ-ବେଶ
ଶିଖା-ମୋଚନ ଲୋକ ପ୍ରବେଶ ।
ଭକ୍ତି-ବିରକ୍ତିକ-ପ୍ରବର୍ତ୍ତକ-ଚିତ୍ତ
ଶୁଦ୍ଧ-କନକ-ଜୟ-ଗୌୖର-ନମସ୍ତେ ।୮।



# ଶ୍ରୀ ଅଦ୍ୱୈତାଷ୍ଟକମ୍

ହୁହୁଙ୍କାର-ଗର୍ଜ୍ଜନାଦି ଅହୋରାତ୍ର-ସଦ୍‌ଗୁଣଂ
ହା କୃଷ୍ଣ ! ରାଧିକାନାଥ । ପ୍ରାର୍ଥାନାଦି ଭାବନମ୍ ।
ଧୂପଦୀପ-କସ୍ତୁରୀ ଚ ଚନ୍ଦନାଦି-ଲେପନଂ
ସୀତାନାଥାଦ୍ୱୈତ-ଚରଣାରବିନ୍ଦ-ଭାବନମ୍ ।୧।

ଗଙ୍ଗାବାରି-ମନୋହାରୀ-ତୁଳସ୍ୟାଦି-ମଞ୍ଜରୀ
କୃଷ୍ଣଗାନ-ସଦାଧ୍ୟାନ-ପ୍ରେମବାରି-ଝର୍ଝରୀ ।
କୃପାବ୍ଧି କରୁଣାନାଥ ଭବିଷ୍ୟତି ପ୍ରାର୍ଥନଂ
ସୀତାନାଥାଦ୍ୱୈତ-ଚରଣାରବିନ୍ଦ-ଭାବନମ୍ ।୨।

ମୁହୁର୍ମୁହୁଃ କୃଷ୍ଣ କୃଷ୍ଣ ଉଚ୍ଚୈସ୍ୱରେ ଗାୟନ୍ତଂ
ଅହେ ନାଥ ଜଗତ୍ରାତଃ ମମ ଦୃଷ୍ଟି ଗୋଚରମ୍ ।
ଦ୍ୱିଭୁଜ କରୁଣାନାଥ ଦୀୟତାଂ ସୁଦର୍ଶନଂ
ସୀତାନାଥାଦ୍ୱୈତ-ଚରଣାରବିନ୍ଦ-ଭାବନମ୍ ।୩।

ଶ୍ରୀ ଅଦ୍ୱୈତ-ପ୍ରାର୍ଥନାର୍ଥ ଜଗନ୍ନାଥ-ଆଲୟଂ
ଶଚୀମାତୃଗର୍ଭଜାତ ଚୈତନ୍ୟ କରୁଣାମୟମ୍ ।
ଶ୍ରୀ ଅଦ୍ୱୈତ ସଙ୍ଗ-ରଙ୍ଗ କୀର୍ତ୍ତନ-ବିଳାସନଂ
ସୀତାନାଥାଦ୍ୱୈତ-ଚରଣାରବିନ୍ଦ ଭାବନମ୍ ।୪।
ଅଦ୍ୱୈତ-ଚରଣାରବିନ୍ଦ-ଜ୍ଞାନ-ଧ୍ୟାନ-ଭାବନଂ
ସଦାଦ୍ୱୈତ-ପାଦପଦ୍ମ ରେଣୁରାଶି-ଧାରଣମ୍ ।
ଦେହି ଭକ୍ତିଂ ଜଗନ୍ନାଥ ରକ୍ଷ ମାମଭାଜନଂ
ସୀତାନାଥାଦ୍ୱୈତ-ଚରଣାରବିନ୍ଦ ଭାବନମ୍ ।୫।
ସର୍ବଦାତଃ ସୀତାନାଥ ପ୍ରାଣେଶ୍ୱର ସଦ୍‌ଗୁଣଂ
ଯେ ଜପନ୍ତି ସୀତାନାଥ ପାଦପଦ୍ମ କେବଳମ୍ ।
ଦୀୟତାଂ କରୁଣାନାଥ ଭକ୍ତିଯୋଗ ତତ୍‌କ୍ଷଣଂ
ସୀତାନାଥାଦ୍ୱୈତ ଚରଣାରବିନ୍ଦ ଭାବନମ୍ ।୬।
ଶ୍ରୀଚୈତନ୍ୟ ଜୟାଦ୍ୱୈତ ନିତ୍ୟାନନ୍ଦ କରୁଣାମୟଂ
ଯେ ଜପନ୍ତି ସୀତାନାଥ ପାଦପଦ୍ମ କେବଳମ୍ ।
ଦୀୟତାଂ କରୁଣାନାଥ ଭକ୍ତିଯୋଗ ତତ୍‌କ୍ଷଣଂ
ସୀତାନାଥାଦ୍ୱୈତ ଚରଣାରବିନ୍ଦ ଭବନମ୍ ।୭।
ଶ୍ରୀଚୈତନ୍ୟ ଜୟାଦ୍ୱୈତ ନିତ୍ୟାନନ୍ଦ କରୁଣାମୟଂ
ଏକ ଅଙ୍ଗ ତ୍ରିଧାମୂର୍ତ୍ତି କୈଶୋରାଦି ସଦା ବୟମ୍ ।
ଜୀବତ୍ରାଣ-ଭକ୍ତି-ଜ୍ଞାନ-ହୁଙ୍କାରାଦି ଗର୍ଜ୍ଜନଂ
ସୀତାନାଥାଦ୍ୱୈତ-ଚରଣାରବିନ୍ଦ-ଭାବନମ୍ ।୮।
ଦୀନହୀନ-ନିନ୍ଦକାଦି-ପ୍ରେମଭକ୍ତି-ଦାୟକଂ
ସର୍ବଦାତଃ ସୀତାନାଥ ଶାନ୍ତିପୁର ନାୟକମ୍ ।
ରାଗ-ରଙ୍ଗ-ସଙ୍ଗଦୋଷ-କର୍ମଯୋଗ-ମୋକ୍ଷଣଂ
ସୀତାନାଥାଦ୍ୱୈତ-ଚରଣାରବିନ୍ଦ-ଭାବନମ୍ ।୯। ❖

କାଳାନ୍ନଷ୍ଟଃ ଭକ୍ତିଯୋଗଂ ନିଜଂ ଯଃ ପ୍ରାଦୁଷ୍କର୍ତ୍ତୁଂ କୃଷ୍ଣଚୈତନ୍ୟ ନାମା ।
ଆବିର୍ଭୂତସ୍ତସ୍ୟ ପାଦାରବିନ୍ଦେ ଗାଢ଼ଂ ଗାଢ଼ଂ ଲୀୟତାଂ ଚିତ୍ତଭୃଙ୍ଗ ।।



